# ମାଲେରିଆ

ଶ୍ରୀ ଗୋପାଳଚନ୍ଦ୍ର ପଟ୍ଟନାୟକ
ଏମ୍. ବି., ବି. ଏସ୍., ଡି. ଟି. ଏମ୍.

# ମାଲେରିଆ



ଡାକ୍ତର ଶ୍ରୀ ଗୋପାଳଚନ୍ଦ୍ର ପଟ୍ଟନାୟକ

ଏମ୍. ବି., ବି. ଏସ୍., ଡି. ଟି. ଏମ୍.

ସିଭିଲ ଆସିଷ୍ଟାଣ୍ଟ ସର୍ଜନ

ଓ

କେନ୍ଦ୍ରାପଡ଼ା ମାଲେରିଆ ସୋସାଇଟି ସମ୍ପାଦକ

ମାଲେରିଆ ଦିବସ

୨୩ । ୧୧ । ୧୯୪୧

# ଲେଖକଙ୍କର ଅନ୍ୟାନ୍ୟ ବହି

୧ । ନିମ୍ନପ୍ରାଥମିକ ସ୍ୱାସ୍ଥ୍ୟସାଥୀ ଟ ୦ ।

୨ । ଉଚ୍ଚପ୍ରାଥମିକ ସ୍ୱାସ୍ଥ୍ୟସାଥୀ ଟ ୦ ।୶

୩ । ମଧ୍ୟ ସ୍ୱାସ୍ଥ୍ୟସାଥୀ ଟ ୦ ୳

୪ । ଜାତୀୟ ଖାଦ୍ୟ (ଯନ୍ତ୍ରସ୍ଥ)

ପ୍ରାପ୍ତିସ୍ଥାନ—
ସାରସ୍ୱତ ପ୍ରେସ
କଟକ

ଓଡ଼ିଶା ଜଙ୍ଗଲର ବାଉଁଶରୁ ଟିଟାଗଡ଼ କାଗଜ କଳରେ ତିଆରି
କାଗଜରେ ଏହି ବହି ଛପା ହୋଇଅଛି ।

ଲେଖକଙ୍କଦ୍ୱାରା ପ୍ରକାଶିତ ମୂଲ୍ୟ—ଟ ୦ ୳
୧୯୪୩

# ଭୂମିକା



ଏହି କ୍ଷୁଦ୍ର ପୁସ୍ତିକାର ପ୍ରକାଶରେ ଟିକିଏ କୈଫିୟତ ଦରକାର ହେଉଛି । କେନ୍ଦ୍ରାପଡ଼ା ମାଲେରିଆ ସୋସାଇଟିର ମାଲେରିଆ ଦିବସ ପାଳନ ଉପଲକ୍ଷେ (୨୩-୧୧-୧୯୪୧) ଏହି ପୁସ୍ତିକାଟି ପ୍ରଥମେ ଲେଖା ହୋଇଥିଲା । ବହୁ ଅନିବାର୍ଯ୍ୟ କାରଣରୁ ଛପା ହୋଇପାରି ନ ଥିଲା; ବରଂ ଛପା ହୋଇ ରହିଥିଲା । ବର୍ତ୍ତମାନ ଶିକ୍ଷିତ ଜନସମାଜର ସମ୍ମୁଖୀନ ହେବାକୁ ପ୍ରସ୍ତୁତ ହୋଇଛି ।

ନଦୀର ଜଳସ୍ରୋତ ବୋହି ଚାଲିଛି, କାଳର ସ୍ରୋତ ମଧ୍ୟ ଚାଲିଛି । ସର୍ବଗ୍ରାସୀ ନିର୍ମମ ଯୁଦ୍ଧ ଚତୁର୍ଥ ବର୍ଷର ମଧ୍ୟ ଭାଗରେ ପ୍ରବେଶ କଲା । ପୃଥିବୀ ପୃଷ୍ଠରେ ବହୁ ନୈତିକ, ଭୌତିକ, ସାମାଜିକ, ଆର୍ଥିକ ଓ ରାଜନୈତିକ ପରିବର୍ତ୍ତନ ଘଟିଯାଉଛି । ଏହାର ପରିଣାମ ଆମେ ଅଙ୍ଗେ ଅଙ୍ଗେ ନିଭାଇ ଆସୁଅଛୁଁ । ସର୍ବବ୍ୟାପୀ ଅଭାବ ସମାଜକୁ ଗ୍ରାସି ରହିଅଛି । ମାଲେରିଆ ପରିକଳ୍ପନାର ଉପକରଣଗୁଡ଼ିକ ବର୍ତ୍ତମାନ ଦୁର୍ମୂଲ୍ୟ ବା ଦୁଷ୍ପ୍ରାପ୍ୟ । "ମାଲେରିଆ" ବିରୁଦ୍ଧରେ ପ୍ରଧାନ ବାହୁ ମାଲେରିଆ ଜୀବାଣୁ ନାଶକ ମହୌଷଧ କ୍ୱିନାଇନ୍ ବର୍ତ୍ତମାନ ଏକ-ପ୍ରକାର ଦୁଷ୍ପ୍ରାପ୍ୟ । ତାର ସ୍ଥାନ ପୂରଣ କରିବାପାଇଁ ଅନ୍ୟାନ୍ୟ ଔଷଧ ଖୋଜା ଚାଲିଛି । କିନ୍ତୁ ସନ୍ତୋଷଜନକ ଫଳ ମିଳିନାହିଁ । ସିଙ୍କୋନା ବୃକ୍ଷର ଆଶୁ ବର୍ଦ୍ଧନ, ଦେଶଜାତ ଉଦ୍ଭିଦରୁ ନୂଆ ମାଲେରିଆ ନିବାରକ ଔଷଧ ଆବିଷ୍କାର ଓ ରସାୟନିକ ଔଷଧ ତିଆର କରିବାର ଯୋଜନା

ଅତ୍ୟାବଶ୍ୟକ ହୋଇ ପଡ଼ିଲାଣି । ସୁଖର କଥା ଆମ ଓଡ଼ିଶାର ଆୟୁର୍ବେଦ ଦେବେନ୍ଦ୍ରନାଥ ଗିରି ଗିଲରୁ ଏକପ୍ରକାର ଔଷଧ ପ୍ରସ୍ତୁତ କରିଛନ୍ତି । ଏହା କ୍ୱିନାଇନ୍‌ର କାମ କରୁଛି ଓ ମାଲେରିଆ ରୋଗ ଏଥିରେ ଭଲ ହେଉଛି । ବର୍ତ୍ତମାନର ପରିସ୍ଥିତିରେ ମଶା ନିବାରଣ ପରିକଳ୍ପନାକୁ କାର୍ଯ୍ୟକାରୀ କରିବା ଦିଗରେ ପ୍ରଚେଷ୍ଟା ବିଧେୟ । ସର୍ବ୍ୟ ମାନବର ପ୍ରଧାନ ଜୀବନଧାରକ ହେଉଛି ଅଜେୟ ଆଶାବାଦ । ମଙ୍ଗଳମୟ ଭବିଷ୍ୟତରେ, ଭବିଷ୍ୟତର ପୁନର୍ଗଠନ ଉପରେ ପୂର୍ଣ୍ଣ ବିଶ୍ୱାସ ରଖି ଯଥାଶକ୍ତି କାର୍ଯ୍ୟ କରି ଚାଲିବାକୁ ହେବ ।

ଏହି ଅନ୍ତର୍ଜାତୀୟ ଦୁର୍ବିପାକକୁ ଭ୍ରୂକ୍ଷେପ ନ କରି ମାଲେରିଆ ନିଜର ତାର ଚିରନ୍ତନ କାର୍ଯ୍ୟ କରି ଚାଲିଛି ବରଂ ଏହି ଦୁରବସ୍ଥାର ଅତ୍ୟଧିକ ସୁବିଧା ନେଉଛି । ମାଲେରିଆ ଯୋଗୁ ଆମ ଭାରତବର୍ଷର ଜାତୀୟ କ୍ଷତିର ହିସାବ କରାଯାଇ ହୋଇଅଛି । ତାର ଅଭାସ ତଳେ ଦିଆଗଲା ।

୧ । ଜନ୍ମ ସଂଖ୍ୟା କମ ହୋଇଛି ଓ ମୃତ୍ୟୁ ସଂଖ୍ୟା ବଢ଼ିଛି ।

୨ । କେବଳ ମାଲେରିଆ ଯୋଗୁ ବର୍ଷକୁ ୧୨,୫୦,୦୦୦ ଲୋକ ମରୁଛନ୍ତି ।

୩ । ମାଲେରିଆଜନିତ ଆନୁସଙ୍ଗିକ ରୋଗ ଯୋଗୁ ବର୍ଷକୁ ଆଉ ୧୨,୫୦,୦୦୦ ଲୋକ ମରୁଛନ୍ତି ।

୪ । କେବଳ ମାଲେରିଆ ଦ୍ୱାରା ୧୦,୦୦୦୦୦୦୦ (ଦଶକୋଟି) ଲୋକ ଆକ୍ରାନ୍ତ ହେଉଛନ୍ତି ।

୫ । ମାଲେରିଆର ଆନୁସଙ୍ଗିକ ରୋଗ ଦ୍ୱାରା ବର୍ଷକୁ ଆହୁରି ୭,୫୦,୦୦୦୦୦ (ସାଢ଼େ ସାତ କୋଟି) ଲୋକ ଆକ୍ରାନ୍ତ ହୁଅନ୍ତି ।

୬ । ମାଲେରିଆ ଯୋଗୁ ଭାରତୀୟମାନଙ୍କର ଜୀବଦଶା ଏତେ ଊଣା ହୋଇଅଛି ।

୭ । ଭାରତୀୟମାନଙ୍କର ଜାତୀୟ ଅବନତ, ସାମାଜିକ ଅବନତ ଓ ଶିକ୍ଷା ପ୍ରସାରର ଅବନତ ପାଇଁ ମାଲେରିଆ ମୁଖ୍ୟତଃ ଦାୟୀ ।

୮ । ଅର୍ଥନୈତିକ ଅବନତି ପାଇଁ ମଧ୍ୟ ମାଲେରିଆ ଦାୟୀ । କେବଳ ମୁଣ୍ଡ ହିସାବରେ ଓ ଘର ହିସାବରେ ଭାରତବର୍ଷର ବାର୍ଷିକ ଅର୍ଥିକ କ୍ଷତ ହୋଇଛି ଟ ୧୧୦,୦୦୦୦୦୦୦୯ (ଶହେ ଦଶକୋଟି)

୯ । ଏହା ଛଡ଼ା ଜାତୀୟ ଆର୍ଥିକ କ୍ଷତ ଓ ସରକାରଙ୍କ ରାଜସ୍ୱ କ୍ଷତ ହେଉଛି ଅମାପ ଓ ଅକଳଣି ।

ଏହି ବିଶାଳ ସମସ୍ୟାର ସମାଧାନରେ ଏହି କ୍ଷୁଦ୍ର ପୁସ୍ତିକାଟି କିଞ୍ଚିତ୍‌ମାତ୍ର ସାହାଯ୍ୟ କରିବାକୁ ସମର୍ଥ ହେଲେ ଲେଖକର ଶ୍ରମ ସଫଳ ହେବ ।

ଅନୁଗୋଳ
୨୫ । ୩ । ୧୯୫୩

ଲେଖକ
**ଶ୍ରୀ ଗୋପାଳଚନ୍ଦ୍ର ପଟ୍ଟନାୟକ**

# ସୂଚୀ





# ମାଲେରିଆ



## ସମସ୍ୟାର ଗୁରୁତ୍ୱ

ମନୁଷ୍ୟ ଜୀବନରେ ସୁଖ ବହୁତ ଅଛି । ସୁଖର ଉପଭୋଗ ନିମିତ୍ତ ସାମଗ୍ରୀ ମଧ୍ୟ ବହୁତ ଅଛି; କିନ୍ତୁ ଏହାର ତୁଳନାରେ ଦୁଃଖଦୈନ୍ୟର ସମଷ୍ଟି ବେଶୀ । ଏହା ସୃଷ୍ଟିର ନିୟମ ବୋଲି ଧରାଯାଇ ପାରେ । ଆମ ଦେଶ ଭାଗରେ ସୁଖଠାରୁ ଦୁଃଖର ଭାଗ ବେଶୀ । ରାଜନୈତିକ, ସାମାଜିକ ଓ ଅର୍ଥନୈତିକ ସମସ୍ତ କ୍ଷେତ୍ରରେ ଦୁଃଖଦୈନ୍ୟର ପ୍ରାଦୁର୍ଭାବ ଅତି ଅଧିକ । ଶିକ୍ଷା ଓ ପ୍ରଚାରର ଅଭାବରୁ ବହୁ ଦୁଃଖଶୋକ ଭୋଗୁଥିଲେ ମଧ୍ୟ ସେଗୁଡ଼ିକୁ ଆମେ ଭଲ କରି ବୁଝିପାରୁ ନ ଥାଇଁ, ସେଗୁଡିକର ପ୍ରତିକାର କରିବା ତ ଦୂରର କଥା । ଆମ ଭିତରୁ ଅପେକ୍ଷାକୃତ ଭାଗ୍ୟବାନ୍‌ମାନେ ନିଜ ପଡ଼ୋଶୀମାନଙ୍କର ଦୁଃଖର ଜୀବନ ବୁଝନ୍ତି ନାହିଁ । ଆମ ଦେଶରେ ଦୁଃଖଦୈନ୍ୟର ବହୁତ କାରଣ ଅଛି । ସେଥି ମଧ୍ୟରେ ମାଲେରିଆ ରୋଗ (ପାଳିଜ୍ୱର, ଏକୋଇ ଜର) ଗୋଟିଏ ପ୍ରଧାନ କାରଣ ।

କିନ୍ତୁ ମାଲେରିଆ ଯୋଗୁଁ ଆମ ଜାତୀୟ କ୍ଷତିର ପରିମାଣ ଲୋକସାଧାରଣଙ୍କ ଜାଣିବା ସହଜ ନୁହେଁ । କୌଣସି ସ୍ଥାନରେ ମରୁଡ଼ି ହେଲେ "ସମାଜ"ରେ ସାଙ୍ଗେ ସାଙ୍ଗେ ପ୍ରକାଶ ପାଉଛି ; ଦୁର୍ଭିକ୍ଷ ଆରମ୍ଭ ହେଲେ ଗୁନ୍ଦାଖାତା ଧରି ଲୋକେ ବାହାରି ପଡ଼ନ୍ତି । କୌଣସି ଗ୍ରାମରେ ଦୁଇ ଚାରି ଜଣଙ୍କୁ ହଇଜା ବା ବସନ୍ତ ଧରିଲେ

ସ୍ୱାସ୍ଥ୍ୟ ବିଭାଗର ସମସ୍ତ ଶକ୍ତି ପ୍ରୟୋଗ କରାହେଉଛି । ସପ୍ତାହକୁ ସପ୍ତାହ କେତେଜଣ ଆକ୍ରାନ୍ତ ହେଲେ,କେତେଜଣ ମଲେ ସମ୍ବାଦ-ପତ୍ରମାନଙ୍କରେ ପ୍ରକାଶ ପାଉଛି । ମାଲେରିଆ ରୋଗ ବେଶୀ ବ୍ୟାପକ ହୋଇଥିଲେ ମଧ୍ୟ ଏଥିରେ ଚମକପ୍ରଦ ଘଟଣା ଘଟେ ନାହିଁ । ସେଥିପାଇଁ ତାହା ଲୋକସାଧାରଣଙ୍କ ଦୃଷ୍ଟି ଆକର୍ଷଣ କରେ ନାହିଁ । ଅଥଚ ଏଥିରେ ଖୁବ୍ ବେଶୀ ସାମାଜିକ ଓ ଜାତୀୟ କ୍ଷତି ଘଟିଥାଏ । ସରକାରୀ ଗଣନାରୁ ଜଣାଯାଏ, ଆମ ଭାରତବର୍ଷରେ ବର୍ଷକୁ ୧୨,୫୦,୦୦୦ରୁ ବେଶୀ ଲୋକ ମାଲେରିଆରେ ମରନ୍ତି । କେବଳ ଓଡ଼ିଶା ପ୍ରଦେଶରେ ( ଗଡ଼ଜାତ ଛଡ଼ା) ୧୯୩୯ରେ ୧,୦୧,୩୪୪ ଜଣ ଏହି ରୋଗରେ ମରିଥିଲେ । କେବଳ କନ୍ଧ-ମାଳରେ ୮୨ ହଜାର ଜନସଂଖ୍ୟାରୁ ୨ ହଜାର ଲୋକ ଏହି ରୋଗରେ ମରିଥିଲେ । କିନ୍ତୁ ମରିବା ସଂଖ୍ୟାଠାରୁ ଭୋଗିବା ସଂଖ୍ୟା ଖୁବ୍ ବେଶୀ—ପ୍ରାୟ ୧୦୦ ଗୁଣ ହେବ । ସମସ୍ତ ଭାରତବର୍ଷରେ ବର୍ଷକୁ ପ୍ରାୟ ୧୨,୦୦୦୦୦୦୦୦ (ବାର କୋଟି) ଲୋକ ମାଲେରିଆ ଦ୍ୱାରା ଆକ୍ରାନ୍ତ ହୁଅନ୍ତି ।

ମାଲେରିଆ ରୋଗୀ ହଠାତ୍ ମରେ ନାହିଁ । ସେ ବହୁଦିନ ପର୍ଯ୍ୟନ୍ତ ରୋଗ ଭୋଗି ସଢ଼ୁଥାଏ । ମରେ ନାହିଁ ସତ; କିନ୍ତୁ ଜୀଇଁ ମରି ରହିଥାଏ । ରକ୍ତହୀନତା ଓ ଦୁର୍ବଳତା ଯୋଗୁଁ କୌଣସି କାର୍ଯ୍ୟ କରିବାକୁ ଇଚ୍ଛା କରେ ନାହିଁ । ସବୁବେଳେ ଶିଥିଳ ହୋଇ ବସି ବା ଶୋଇ ରହିଥାଏ । ମନରେ ସ୍ଫୂର୍ତ୍ତି ନ ଥାଏ । ମୁହଁରେ ଆନନ୍ଦର ଭାବ ନ ଥାଏ । ସେ ବିଷାଦର ଗୋଟିଏ ଚଳପ୍ରତିମା ପରି ଜଣାପଡ଼େ । ଯୁବକ ହେଲେ ମଧ୍ୟ ତାର ଯୌବନସୁଲଭ ଚପଳତା, ଉଦ୍ଦାମ, ସାହସ ଓ ଉଦ୍‌ବେଗର ସମ୍ପୂର୍ଣ୍ଣ ଅଭାବ ଥାଏ । ଶାରୀରିକ ଓ ମାନସିକ ବାର୍ଦ୍ଧକ୍ୟ ଅଚିରେ ଆସି ପହୁଞ୍ଚେ । ଏହି ଦୁରବସ୍ଥାର

କରୁଣ ଶବ୍ଦ ଅଙ୍କନ କରିବା ପାଇଁ କବିବର ବା ସାହିତ୍ୟରଥୀଙ୍କର ଲେଖା ପଢ଼ିବ । ମାଲେରିଆ ଯୋଗୁଁ ଘଟୁଥିବା ନିତ୍ୟନୈମିତ୍ତିକ ଘଟଣାରେ କେତୋଟି କରୁଣ ଶବ୍ଦ ପାଠକ ପାଠିକାଙ୍କ ସମ୍ମୁଖରେ ଉପସ୍ଥାପିତ କରାଯାଉଛି ।

ଜମିବାଡ଼ି କଡ଼ାଣ ହୋଇ ନାହିଁ । ଅସରାଏ ବର୍ଷା ପାଇଁ ସମସ୍ତେ ଅନାଇ ରହିଛନ୍ତି । ବର୍ଷା ହେଲା । କାଲି ସକାଳୁ ଲଙ୍ଗଳ ଧରି ଜମି କଡ଼ାଣ କରିବା କଥା । ସବୁ ଠିକ୍‌ଠାକ ହେଲା । କିନ୍ତୁ କମ୍ପ ହୋଇ କାହିଁ ମାଡି ଆସିଲା ଜର । ଦେହରେ ତାତି ପୂରିଗଲା । କେତେ ସମୟ ଛଟ ପଟ ହେବା ପରେ ଧମାଧମ ଝାଳ ବୋହି-ଗଲା । ଜର ଛାଡ଼ିଗଲା ସତ; ଦେହରେ ବଳ ଓ ମନରେ ଉତ୍ସାହ ରହିଲା ନାହିଁ । ସେଦିନ କଡ଼ାଣ ବନ୍ଦ ରହିଲା ।

ଆଉ ଗୋଟିଏ ଶବ୍ଦ । କାଲି ବିଶ୍ୱବିଦ୍ୟାଳୟର ପରୀକ୍ଷା । ଛାତ୍ରଟିର ବହୁବର୍ଷ ଧରି ପରିଶ୍ରମ, ସାଧନା ଓ ସଂଯମର ଫଳ ଫଳିବ ଏହି ପରୀକ୍ଷାରେ । ସେଥିପାଇଁ ସେ ମନମୂନ ଦେଇ ପ୍ରସ୍ତୁତ । କିନ୍ତୁ ଅକସ୍ମାତ୍ କାହୁଁ ଆସିଲା କମ୍ପଜର । ନିର୍ଦ୍ଧାରିତ ସମୟରେ ପରୀକ୍ଷା ଆରମ୍ଭ ହେଲା । କିନ୍ତୁ ଆମ ଛାତ୍ରବନ୍ଧୁଟି ପରୀକ୍ଷା ଦେଇ ପାରିଲା ନାହିଁ । ସବୁ ଚେଷ୍ଟା ତାର ପଣ୍ଡ ହେଲା ।

ବିଚାରାଳୟରେ ସଙ୍ଗୀନ ଫୌଜଦାରୀ ମକଦ୍ଦମାର ବିଚାର ଚାଲିଛି । ଆସାମୀମାନଙ୍କର ଜୀବନ, ଧନ ଓ ସ୍ୱାଧୀନତା ଏଥିରେ ନିର୍ଭର କରୁଛି । ପ୍ରବୀଣ ଓକିଲ ବିଚକ୍ଷଣତାସହ ଜେରା କରୁଛନ୍ତି । ହାକିମ ଓ ଦେଖଣାହାରିମାନେ ଆଶ୍ଚର୍ଯ୍ୟ ହୋଇ ତାଙ୍କର ବିଚକ୍ଷଣ ବୁଦ୍ଧିର ପ୍ରଶଂସା ମନେ ମନେ କରୁଛନ୍ତି । ହଠାତ୍ ମିସଲରେ ଶୃଙ୍ଖଳ୍ୟ ଉପସ୍ଥିତ ହୋଇଗଲେ । ସମସ୍ତଙ୍କର ଦୃଷ୍ଟି ଓକିଲ ମହାଶୟଙ୍କ ଆଡ଼କୁ ଆକୃଷ୍ଟ ଗଲେ । ଦେଖାଗଲା, ସେ କମ୍ପୁଛନ୍ତି । କଥାରେ

ଖନ ବାଜୁଛି । ଲୋମମୂଳସବୁ କୁଞ୍ଚିତ ହୋଇଅଛି । ଠିଆ ହେବାର ଶକ୍ତି ତାଙ୍କର ନାହିଁ । ଦଯ୍ରାକ୍ତ ହାକିମ ଶୁଣାଣି ସେଦିନପାଇଁ ବନ୍ଦ କରି ଅନ୍ୟ ତାରିଖ ପକାଇଲେ । ବିଚ୍ଛୁର ଆସାମୀମାନେ ଆଉ କେତେଦିନ ହାଜତରେ ବନ୍ଦୀ ହୋଇରହିଲେ ।

ଅନ୍ୟ ତାରିଖ ଦିନ ଶୁଣାଣି ପୁଣି ଚାଲିଛି । ହାକିମ ଓ ଓକିଲଙ୍କ ମଧ୍ୟରେ ମୃଦୁ ଗମ୍ଭୀର ସ୍ୱରରେ ଜବାବ ସୁଆଲ ଚାଲିଛି । ଆଜି ଶୁଣାଣି ଶେଷ ହୋଇ ରାୟ ଦିଆଯିବ; କିନ୍ତୁ ଜବାବ ସୁଆଲର ଚାଞ୍ଚଲ୍ୟ ମଧ୍ୟରେ ଦେଖାଗଲା ହାକିମଙ୍କ ମୁହଁ ଶୁଖିଯାଇଛି । ଓଠ ଥରୁଛି । ସେ ଆଉ କଲମ ଧରି ପାରୁ ନାହାନ୍ତି । କ୍ରମେ ସମସ୍ତ ଦେହ କମ୍ପିଉଠିଲା । ଦେହର ତାତି ବଢ଼ିବାକୁ ଲାଗିଲା । ଖାସ କାମରାରେ ଦେଖାଗଲା ତାତିର ପରିମାଣ ହେଉଛି ୧୦୫° ।

ଡାକ୍ତରଖାନା ଆଜି କର୍ମମାନ । ବଡ଼ ଧରଣର ଗୋଟିଏ ସାଂଘାତିକ ଅପରେସନ୍ ପାଇଁ ଯୋଗାଡ଼ ଚାଲିଛି । ସାଁ ସାଁ ହୋଇ ବାଷ୍ପଶୋଧକ ଯନ୍ତ୍ର ଚାଲିଛି । ରୋଗୀ ପ୍ରସ୍ତୁତ । ବନ୍ଧୁବାନ୍ଧବମାନେ ଉଦ୍‌ବିଗ୍ନ ହୋଇ ଅପେକ୍ଷା କରୁଅଛନ୍ତି । କିନ୍ତୁ ଖବର ଆସିଲା ଡାକ୍ତର ନିଜେ ମାରାତ୍ମକ ମ୍ୟାଲେରିଆ ଦ୍ୱାରା ଆକ୍ରାନ୍ତ । ହୋସ୍ ନାହିଁ । ତାଙ୍କର ଚିକିତ୍ସା ପାଇଁ ଓ ଡାକ୍ତରଖାନା ଚଳାଇବା ପାଇଁ ସିଭିଲ୍ ସର୍ଜନଙ୍କ ନିକଟକୁ ଜରୁରୀ ତାର ଯାଇଛି । ଅପରେସନ୍ ସେଦିନ ପାଇଁ ବନ୍ଦ ହେଲା, ସଦରରୁ ଡାକ୍ତର ଆସିଲେ କରାଯିବ ।

ଏହିପରି କେତେ କରୁଣ ଚିତ୍ର, କେତେ ସାଂଘାତିକ ଘଟଣା ଆମ ମ୍ୟାଲେରିଆ ଆକ୍ରାନ୍ତ ଦେଶରେ ଘଟୁଛି । ଆଖି, କାନ, ମନର ଉପଯୁକ୍ତ ବ୍ୟବହାର କଲେ ସବୁ ଜଣାପଡ଼ିବ, ସମସ୍ୟାର ଗୁରୁତ୍ୱ ବୁଝାଯିବ ।

ଏହି ରୋଗ ଆମ ଦେଶର ବହୁତ ଧନ ଜନ ହାନି କରୁଛି, ଏହା ନିଃସନ୍ଦେହ ।

ଏ ବିଷୟରେ କେନ୍ଦ୍ରାପଡ଼ାର ଉଦାହରଣ ଉଲ୍ଲେଖ ଯୋଗ୍ୟ । ୧୯୨୧ ମସିହାରେ ମ୍ୟାଲେରିଆ ରୋଗ ମହାମାରୀ ରୂପେ ପ୍ରଥମେ ଦେଖାଦେଲା । ଏଥିପୂର୍ବରୁ ସ୍ଥାନଟି ସ୍ୱାସ୍ଥ୍ୟକର ଓ ସମୃଦ୍ଧିଶାଳୀ ଥିଲା । କିନ୍ତୁ ବର୍ତ୍ତମାନ ତାର ଅବସ୍ଥା ଶୋଚନୀୟ । ୧୯୨୧ରେ ଜନଗଣନା ବେଳେ ସହରର ଜନସଂଖ୍ୟା ଥିଲା ୧୪,୨୧୪ । ୧୯୩୧ ମସିହାରେ ହେଲା ୧୨,୭୨୦। ୧୯୪୧ରେ ହୋଇଛି ୧୧,୮୮୮ । ବର୍ତ୍ତମାନ ବାର୍ଷିକ ଜନ୍ମସଂଖ୍ୟା ହେଉଛି ପ୍ରତ୍ୟେକ ୧୦୦୦ରେ ୨୪, ମୃତ୍ୟୁସଂଖ୍ୟା କିନ୍ତୁ ୧୦୦୦କରେ ୩୪ । ୧୬-୧୧-୧୯୪୧ର ଗଣନାରୁ ଜଣାପଡ଼ିଲା ସେଦିନ ୪,୩୪୪ ଜଣ ମ୍ୟାଲେରିଆ ରୋଗରେ ପୀଡ଼ିତ ଥିଲେ; ଶତକଡ଼ା ହେଲା ୩୬.୫ । ଘର ହିସାବରେ ଶତକଡ଼ା ୫୭.୪ ଘରେ ମାଲେରିଆ ରୋଗ ଥିଲା । ଏହି ଅଧୋଗତିରେ ବାଧା ନ ପଡ଼ିଲେ ପୁରାଣ ଇତିହାସ ପ୍ରସିଦ୍ଧ ସହରଟି ଅଚିରେ ଲୋପପାଇବ । ଆମ ପ୍ରଦେଶର ଅନ୍ୟାନ୍ୟ ଅଞ୍ଚଳର ଅବସ୍ଥା ମଧ୍ୟ ଏହିପରି ଶୋଚନୀୟ ।

ଏହିପରି ଗୁରୁତର ସମସ୍ୟାର ସମାଧାନ ଶୀଘ୍ର ଲୋଡ଼ା । ଅନ୍ତର୍ଜାତୀୟ ପରିସ୍ଥିତି ଫଳରେ ଆମର ସମସ୍ତ ଶକ୍ତି ଯୁଦ୍ଧ ଯୋଜନାରେ ପ୍ରୟୋଗ କରାହେଉଛି । ହେବାର ମଧ୍ୟ କଥା । କିନ୍ତୁ ଆଧୁନିକ ବହୁବର୍ଷବ୍ୟାପୀ ବ୍ୟାପକ ଯୁଦ୍ଧରେ ଦେଶର ଜନଶକ୍ତିକୁ (**Man Power**) ଖୁବ୍ ଉଚ୍ଚସ୍ତରରେ ରଖିବାକୁ ହେବ । ସାର୍ ଗିର୍ଜାଶଙ୍କର ବାଜପାଇଙ୍କ କଥାରେ, ଯୁଦ୍ଧ ସାଂଘାତିକ ଭାବରେ ବାସ୍ତବିକ ଥିଲେ ସୁଦ୍ଧା, ସମସ୍ତ ଶକ୍ତିର ପ୍ରୟୋଗ ଦାବୀ କରିବାରେ ଜବରଦସ୍ତ ହୋଇଥିଲେ ସୁଦ୍ଧା, ଜାତୀୟ ଓ ଅନ୍ତର୍ଜାତୀୟ

ଇତିହାସରେ ଏହା ଗୋଟିଏ ସାମୟିକ ଘଟଣା ମାତ୍ର । ଜନସାଧାରଣଙ୍କ ସ୍ୱାସ୍ଥ୍ୟସଂରକ୍ଷଣ ସାମୟିକ ନୁହେଁ; ଚିରନ୍ତନ । ପୁଣି ଆଧୁନିକ ଯୁଦ୍ଧଯୋଜନାରେ କୌଣସି ନିର୍ଦ୍ଦିଷ୍ଟ ରଣକ୍ଷେତ୍ର (War Front) ନାହିଁ । ମୁହାଁମୁହିଁ ଯୁଦ୍ଧ ଜାଗାରେ, କାରଖାନାରେ, କୃଷିକ୍ଷେତ୍ରରେ, ଘରେ ବାହାରେ ବର୍ତ୍ତମାନ ଯୁଦ୍ଧର ରଣକ୍ଷେତ୍ର ବିଦ୍ୟମାନ । ଯୁଦ୍ଧରତ ଦେଶର ସମସ୍ତ ନାଗରିକ, ସୈନିକ ବା ଅସୈନିକ ଯୋଦ୍ଧା । ଯୁଦ୍ଧ ସାଂଘାତିକ ଭାବରେ ଚାଲିଥିଲେ ମଧ୍ୟ ସ୍ୱାସ୍ଥ୍ୟ ସଂରକ୍ଷଣର ସମସ୍ତ ଯୋଜନାକୁ କାର୍ଯ୍ୟକାରୀ କରିବାକୁ ହେବ । ଏହାର ଅବହେଳା ହେଉଛି ଯୁଦ୍ଧବିରୋଧ ଓ ଅକ୍ଷମଣୀୟ ।*

ମାଲେରିଆ ସମସ୍ୟାର ସମାଧାନ ପାଇଁ ମାଲେରିଆ ରୋଗର କାରଣ ଓ ଉପାୟଗୁଡ଼ିକ ଲୋକ ସାଧାରଣ ଜାଣିବା ଦରକାର । ଦେଶ ବିଦେଶରେ ପ୍ରଚଳିତ ମାଲେରିଆ ବିରୋଧୀ ପରିକଳ୍ପନା ଓ ଯୋଜନାଗୁଡ଼ିକ ଅନ୍ୟାନ୍ୟ ଦେଶର ଦୃଷ୍ଟି ଆକର୍ଷଣ କରିବା

---

*"War, however grim its reality, however imperative its claim, is only a passing phase in the course of history and the maintenance of health activities on the home front must not be neglected. Any serious reduction of the health services during war time should, therefore, be deprecated". From the speech of Sir Girja Sankar Bajpai, member in-charge of the department of Education, Health and Land in the Government of India, p. 2, Public Health Commissioner's Annual Report for 1940.

ଉଚିତ । ଆମ ଦେଶୋପଯୋଗୀ ତଥା ଆମ ପ୍ରଦେଶ ଉପଯୋଗୀ ପରିକଳ୍ପନା ଜନସାଧାରଣଙ୍କ ସମ୍ମୁଖରେ ଉପସ୍ଥାପିତ କରି ସେଥି-ପ୍ରତି ପ୍ରବଳ ଜନମତ ଗଠନ ଓ ସର୍ବସାଧାରଣ ସମର୍ଥନର ଯୋଗାଡ଼ କରିବା ଦରକାର । ଏହି ଉଦ୍ଦେଶ୍ୟରେ ଏହି କ୍ଷୁଦ୍ର ପୁସ୍ତିକା ଖଣ୍ଡି ଲେଖାଗଲା ।

## ମାଲେରିଆ ରୋଗର କାରଣ

ତ୍ରିଭୁଜରେ ତିନିଗୋଟି ଭୁଜ ବା ବାହୁ ଥାଏ । ତିନିଗୋଟି ବାହୁରୁ କୌଣସି ଗୋଟିଏ ବାହୁ କାଢ଼ିନେଲେ ବା ଅନ୍ୟ କୌଣସି ବାହୁଠାରୁ ଅଲଗା କରି ଦେଲେ ଆଉ ତ୍ରିଭୁଜ ହୋଇ ରହିବ ନାହିଁ । ତ୍ରିଭୁଜଟି ଭାଙ୍ଗିଯିବ ।



ସେହିପରି ମେଲେରିଆର ତିନିଗୋଟି କାରଣ ତ୍ରିଭୁଜ ସାଜି ରହିଛି । ସେହି ତିନିଗୋଟି କାରଣ ହେଉଛି ମଣିଷ,ମଶା, ମାଲେ-ରିଆ ଜୀବାଣୁ ।









ଏହି ତିନିଗୋଟି କାରଣରୁ ମାଲେରିଆ ରୋଗ ହୁଏ । ଏହି ମାଲେରିଆ ତ୍ରିଭୁଜରୁ ଯେ କୌଣସି ଭୁଜଟି କାଢ଼ିନେଲେ ବା ଅଲଗା କରି ଦେଲେ ତ୍ରିଭୁଜ ଭାଙ୍ଗିଯିବ ଓ ମାଲେରିଆ ରୋଗ ହେବ ନାହିଁ । ବର୍ତ୍ତମାନ ଦେଖାଯାଉ ଏହି ତିନିଗୋଟି କାରଣ ପରସ୍ପର ଉପରେ କିପରି ନିର୍ଭର କରନ୍ତି ଓ ପରସ୍ପର ଭିତରେ କିପରି ପ୍ରଭାବିତ ହୁଅନ୍ତି ।

ମାଲେରିଆ ରୋଗରେ ଭୋଗୁଥିବା ମଣିଷକୁ ମଶା କାମୁଡ଼ିଲେ ମଶା ପେଟକୁ ମାଲେରିଆ ଜୀବାଣୁ ରକ୍ତସଙ୍ଗେ ଶୋଷି ହୋଇଯାନ୍ତି । ଏହି ମଶାର ନାମ "ଆନୋଫିଲସ୍ ।" ମଶା ପେଟରେ ଜୀବାଣୁର ବଂଶବୃଦ୍ଧି ହୁଏ ଓ ମଶା ଦେହର ସବୁଆଡ଼େ ବ୍ୟାପି ଯାଏ । ବିଶେଷତଃ ମଶାର ଲାଳଗ୍ରନ୍ଥିରେ ସେମାନେ ବେଶୀ ପରିମାଣରେ ରହିଥାନ୍ତି ।

ଏହି ମାଲେରିଆ ଜୀବାଣୁଦ୍ୱାରା ଆକ୍ରାନ୍ତ ହୋଇଥିବା ମଶା ସୁସ୍ଥ ମଣିଷକୁ କାମୁଡ଼ିଲେ ମଶାର ଲାଳରେ ମିଶି ମଣିଷ ରକ୍ତରେ ଜୀବାଣୁମାନେ ପଶନ୍ତି । ସେଠାରେ ମଧ୍ୟ ସେମାନଙ୍କର ବଂଶ ବୃଦ୍ଧି ହୁଏ । ସେମାନେ ରକ୍ତର ଅସଲ ଅଂଶ ଲୋହିତ କଣିକାଗୁଡ଼ିକ ଖାଇଯାନ୍ତି । ରକ୍ତରେ ମାଲେରିଆ ଜୀବାଣୁ ବହୁତ ପରିମାଣରେ ବୃଦ୍ଧି ପାଇଲେ କମ୍ପହୋଇ ଜର ଆସେ । ବେଶୀ ପରିମାଣରେ ଲୋହିତ କଣିକାଗୁଡ଼ିକ ନଷ୍ଟହେଲେ ରକ୍ତହୀନତା ଲକ୍ଷଣ ଦେଖାଯାଏ । ମଣିଷ ଶେତା ପଡ଼ି ଯାଏ । ଏହିପରି ମାଲେରିଆ ଜର୍ଜ୍ଜରିତ ମଣିଷକୁ ମଶା କାମୁଡ଼ିଲେ ପୁଣି ମଶା ପେଟକୁ କେତେକ ମାଲେରିଆ ଜୀବାଣୁ ଚାଲିଯାନ୍ତି । ଏହିପରି ଭାବରେ ମଣିଷଠାରୁ ମଶା, ମଶାଠାରୁ ମଣିଷ ଉପରକୁ ଡେଇଁ ମାଲେରିଆ ଜୀବାଣୁର ବଂଶ ପରମ୍ପରା ଗତି ଚାଲିଥାଏ । ମଣିଷମାନେ ଥରକୁ ଥର ଓ ଜଣକ ପରେ ଜଣେ ମାଲେରିଆ ରୋଗ ଭୋଗୁ ଥାଆନ୍ତି । ଜୀବାଣୁର ଆକ୍ରମଣ ଅଧିକ ହୋଇଗଲେ ଅକାଳରେ ମରିଯାନ୍ତି । କିନ୍ତୁ

ମାଲେରିଆ ବିଲ୍ଲଜକୁ ଭାଙ୍ଗିଦେଇ ପାରିଲେ ବା କୌଣସି ବାହୁକୁ ଘୁଞ୍ଚାଇ ଦେଇ ପାରିଲେ ମାଲେରିଆ ରୋଗ ଆଉ ଉପୁଜି ପାରିବ ନାହିଁ । ଏହା କପରି ହୋଇ ପାରେ ବସ୍ତୁର କରାଯାଉ । ମାଲେରିଆ ରୋଗର ତନିଗୋଟି କାରଣକୁ ଅକ୍ତଆର କରିବା ଉପାୟ ଗୁଡ଼ିକର ବିଶଦ ବିବରଣୀ ତଳେ ଦିଆଗଲା ।

# ମାଲେରିଆ ନିବାରଣ ଉପାୟ

## (୧) ମଣିଷ

ବିଲ୍ଲଜର ମଣିଷ ବାହୁକୁ ଅନ୍ତର କର ହେବ ନାହିଁ । କାରଣ ମଣିଷ ସମସ୍ତଙ୍କୁ ମାର ହେବ ନାହିଁ । କନ୍ତୁ ମଣିଷ ବାହୁକୁ ଟିକଏ ଘୁଞ୍ଚାଇ ଦେଇ ହେବ, ମାଲେରିଆ ଜୀବାଣୁଠାରୁ ମଧ୍ୟ ଅଲଗା କରି ଦେଇ ହେବ । ଏତକ କରିପାରିଲେ ଆମର ଚେଷ୍ଟା ସଫଳ ହେବ ଓ ମାଲେରିଆ ରୋଗ ଆଉ ରହିବ ନାହିଁ । ଏଥିର ଉପାୟ ହେଉଛି—

୧ । ମଶା-ବାହୁର ମଣିଷ-ବାହୁ ସଙ୍ଗେ ଖଞ୍ଜା ଖସାଇ ଦେବା ବା ମଶାଠାରୁ ମଣିଷର ରକ୍ଷା ।

୨ । ମାଲେରିଆ ଜୀବାଣୁ ଓ ମଣିଷ ବାହୁ ଦୁଇଟିର ଖଞ୍ଜା ଖସାଇ ଦେବା ବା ଜୀବାଣୁଠାରୁ ମଣିଷର ରକ୍ଷା ।

**୧ । ମଶାଠାରୁ ମଣିଷର ରକ୍ଷା :—**

ସବୁ ମଶାଙ୍କ ପେଟରେ ମାଲେରିଆ ଜୀବାଣୁ ବଂଶବୃଦ୍ଧି କର ପାରେ ନାହିଁ । ମଣିଷ ରକ୍ତ ମଶାର ପ୍ରଧାନ ଖାଦ୍ୟ ନୁହେଁ । ସବୁ ପ୍ରକାର ମଶା ମଣିଷଙ୍କୁ କାମୁଡ଼ନ୍ତି ନାହିଁ ।

କେତେକ ଅନୋଫିଲିସ୍ ଜାତିର ମଶା ପେଟରେ ମାଲେରିଆ ଜୀବାଣୁ ବଂଶବୃଦ୍ଧି କରନ୍ତି । କ୍ୟୁଲେକ୍ସ୍ ଜାତିର ମଶା ପେଟରେ ମାଲେରିଆ ଜୀବାଣୁର ବଂଶବୃଦ୍ଧି ହୋଏ ନାହିଁ । ଅଣ୍ଡିରା ମଶାମାନେ ମଣିଷକୁ କାମୁଡ଼ନ୍ତି ନାହିଁ । କାରଣ ସେମାନେ ଆମିଷଭୋଜୀ ନୁହନ୍ତି । ଫଳ, ମୂଳ, ପତ୍ରରସ ଶୋଷି ସେମାନେ ପେଟ ପୋଷନ୍ତି । ମାଈ ମଶା ମଧ୍ୟ ସାଧାରଣତଃ ନିରାମିଷଭୋଜୀ । କେବଳ ଅଣ୍ଡା ପାଡ଼ିବା ପୂର୍ବରୁ ଥରେ ଦୁଇଥର ପେଟଭରା ରକ୍ତ ଶୋଷିବାକୁ ତାର ଲୋଡ଼ା ହୁଏ । ସେମାନଙ୍କର ଯେ କେବଳ ମଣିଷ ରକ୍ତ ଲୋଡ଼ା ତାହା ନୁହେଁ, ମଣିଷ ଅଭାବରେ ଅନ୍ୟାନ୍ୟ ଜନ୍ତୁଙ୍କ ରକ୍ତରେ ମଧ୍ୟ ସେମାନଙ୍କର କାମ ଚଳେ । ଏଥିରୁ ଜଣାଯାଉଛି ଯେ, ସମସ୍ତ ମଶାମାନଙ୍କ ମଧ୍ୟରୁ ସାମାନ୍ୟ ସଂଖ୍ୟା ନ୍ୟୂନ ଭାଗ ମଣିଷକୁ କାମୁଡ଼ନ୍ତି ଓ ସେହିମାନେ ଆମର ଶତ୍ରୁ, ସଂଖ୍ୟାଧିକ ଭାଗ ନିର୍ଦ୍ଦୋଷ । ଏହି ଅତି ଅଳ୍ପସଂଖ୍ୟକ କାମୁଡ଼ା ମଶାଙ୍କଠାରୁ ରକ୍ଷା ପାଇବା ପାଇଁ କେତେଗୁଡ଼ିଏ ସୁନ୍ଦର ଓ ସହଜ ଉପାୟ ଅଛି । ସେ ଗୁଡ଼ିକ ହେଉଛି:—

(କ) ରାତିରେ ମଶାରି ଭିତରେ ଶୋଇବା

(ଖ) ଘର, ଦ୍ୱାର ଓ ଝରକାରେ ଲୁହା ଜାଲି ଲଗାଇବା

(ଗ) ରାତିରେ ଅତି ଉଜ୍ଜ୍ୱଳ ଆଲୁଅ ଲଗାଇ ରଖିବା

(ଘ) ମୋଜା, ଦସ୍ତାନା ଓ ମୁଖାପିନ୍ଧି ଦେହ ତମାମ ଘୋଡ଼ାଇ ରଖିବା

(ଙ) ଦେହରେ ତେଲ ହଳଦି ଲଗାଇବା

(ଗ) ଧୂପ, ଧୂଆଁ ଓ ସ୍ପ୍ରେ ( ଫମ୍ ) ଦ୍ୱାରା ମଶା ତଡ଼ିବା ।

(ଛ) ଘର ଭିତରକୁ ଅଲ୍ପ ପବନ ଆସିବାର ସୁବିଧା ରଖିବା ।

**(ଜ) ମଶାରି —**

ସାଧାରଣତଃ ଦିନବେଳେ ମଶା କାମୁଡ଼ନ୍ତି ନାହିଁ । ମଶା ଗଛ-ପତ୍ରରେ, ଘରର ଅନ୍ଧାରୁଆ ଜାଗାରେ ଲୁଚି ରହିଥାନ୍ତି । ରାତିହେଲେ ମଣିଷକୁ କାମୁଡ଼ନ୍ତି । ସେଥିପାଇଁ ରାତିହେବା ମାତ୍ରେ ମଶା ଯେପରି ନ କାମୁଡ଼ନ୍ତି ତାହାର ଉପାୟ କରିବାକୁ ହେବ ।

ଚୁଲବୁଲ କରୁଥିବା ବେଳେ ବା କୌଣସିମତେ ହଲଚଲ ହେଉ ଥିବାବେଳେ ମଶା କାମୁଡ଼ିବାର ଆଶଙ୍କା ଅପେକ୍ଷାକୃତ କମ୍; କିନ୍ତୁ ନିଶ୍ଚଳ ହୋଇ ଶୋଇପଡ଼ି ଥିବାବେଳେ ମଶା କାମୁଡ଼ିବାର ବେଶୀ ଆଶଙ୍କା । ସେଥିପାଇଁ ମଶାରି ଭିତରେ ଶୋଇବା ଉଚିତ । ଜାଲିର କଣା ବଡ଼ ହେଲେ ମାଲେରିଆ ମଶା ପରି ଛୋଟ ଛୋଟ ମଶା ଭିତରକୁ ଚାଲିଯାଇ ପାରନ୍ତି । ସେଥିପାଇଁ ମଶାରି ଭଲ କରି ତିଆରି କରିବାକୁ ହେବ । ପୁଣି ମଶାରିରେ ଯେପରି ଅନ୍ୟ କଣା ନ ରହେ ସେଥିପ୍ରତି ଦୃଷ୍ଟି ଦେବାକୁ ହେବ । କୌଣସି ଯାଗାରେ ଚିରିଗଲେ ସଙ୍ଗେ ସଙ୍ଗେ ସିଲାଇ କରି ଦେବାକୁ ହେବ । ସାଧାରଣ ମଣିଷ ପାଇଁ ୬ଫୁଟ ଲମ୍ବା, ୩ଫୁଟ ଚଉଡ଼ା ଓ ୪ଫୁଟ ଉଚ୍ଚ (୬′ X ୩′ X ୪′)ର ମଶାରି ଦରକାର । ଏହାଠାରୁ ବଡ଼ ହେଲେ ଭଲ । ଶୋଇବାବେଳେ ଦେହର କୌଣସି ଅଂଶ ମଶାରିରେ ଲାଗିବ ନାହିଁ । ତାହାହେଲେ ମଶା ବାହାରେ ଆଇ ମଣିଷକୁ କାମୁଡ଼ି ପାରେ ଓ ମଣିଷ ରକ୍ତରେ ମାଲେରିଆ ଜୀବାଣୁ ପୂରାଇ ପାରେ । ମଶାରି ଭିତରେ ଏକୁଟିଆ ଶୋଇବା ଭଲ । ମଶାପ୍ରବଳ ଯାଗାରେ ଓ ମାଳିଆ ସ୍ଥାନରେ ରହିଲେ ସବୁଦିନେ ରାତିରେ ମଶାରି ବ୍ୟବହାର

କରିବ । ଅନ୍ୟାନ୍ୟ ସ୍ଥାନମାନଙ୍କରେ ବର୍ଷା ଦିନେ, ଶୀତ ଦିନେ ଓ ବସନ୍ତ ଋତୁରେ ମଶାରି ଭିତରେ ଶୋଇବ । କୋରାପୁଟ ଜିଲ୍ଲା, ଗଞ୍ଜାମ ମାଳ ଅଞ୍ଚଳ ଓ ଅନୁଗୁଳ ମାଳରେ ଧନୀଲୋକମାନେ ଓ ସରକାରୀ ଅଫିସରମାନେ ଘରେ ମଶାରି ଭିତରେ ବସି କାମଦାମ କରନ୍ତି । ଘର ପରି ବଡ଼ ବଡ଼ ମଶାରି ତିଆରି କରିଥାନ୍ତି ।

ଶୋଇବା ପୂର୍ବରୁ ମଶାରି ଭିତର ଭଲକରି ଝାଡ଼ି ସବୁ ମଶାଙ୍କୁ ତଡ଼ି ମଶାରି ପକାଇବ । ମଶାରି ତଳ ଲୁଗାକୁ ବିଛଣା ଚାରିକଡ଼େ ଭଲେ ପୁରାଇ ଦେବ । ସକାଳୁ ଉଠିବା ବେଳେ ମଶାରି ଭିତରେ ପଶିଥିବା ସମସ୍ତ ମଶାଙ୍କୁ ମାରି ପକାଇବ । କାରଣ ସେମାନେ ପୁଣି ମଶାଙ୍କର ବଂଶବୃଦ୍ଧି କରିବେ ଓ ହୁଏତ ରୋଗର ଜୀବାଣୁ ଅନ୍ୟ ସୁସ୍ଥ ମଣିଷ ଦେହରେ ଛାଡ଼ିଦେବେ ।

## (ଖ) ସରୁ ଲୁହା ଜାଲି (Wire Netting)

ଅନ୍ୟାନ୍ୟ ମାଲେରିଆ ଅକ୍ରାନ୍ତ ଦେଶରେ ଧନୀ ଲୋକେ ରହିବା ଘରର ଝରକାରେ ସରୁ ଲୁହା ଜାଲି ଲଗାଇ ଦିଅନ୍ତି । ଝରକା ଖୋଲି ଥିଲେ ମଧ୍ୟ ମଶା ସେ ବାଟେ ପଶି ପାରନ୍ତି ନାହିଁ । ଘରଦ୍ୱାରର କବାଟରେ ସ୍ପ୍ରିଂ ଲଗା ଯାଇପାରେ । ସ୍ପ୍ରିଂ କବାଟ ଖୋଲି ଘରକୁ ପଶିଯିବା ମାତ୍ରେ କବାଟ ପୁଣି ଆପେ ଆପେ ବନ୍ଦ ହୋଇଯାଏ ; ମଶା ଆଉ ପଶି ପାରନ୍ତି ନାହିଁ । ଦ୍ୱାର ବାଟେ ପବନ ଯିବା ଆସିବାର ଉପାୟ ରଖିବାକୁ ଚାହିଁଲେ ଦ୍ୱାରରେ ଦୋହରି କବାଟ ଲଗାଇ ଭିତର ପାଖ କବାଟରେ ବଡ଼ ବଡ଼ ବାଟ ରଖାନ୍ତି । ବାଟରେ ସରୁ ଲୁହା ଜାଲି ଖଞ୍ଜି ଦିଅନ୍ତି । ଭିତର ଜାଲି କବାଟରେ ସ୍ପ୍ରିଂ ଲଗାଯାଏ । ଏପରି ଘରେ ରହିଲେ ମଣିଷ ମଶା

କାମୁଡ଼ାରୁ ରକ୍ଷାପାଏ । ଆମ ଓଡ଼ିଶାର ମାଲ ଅଞ୍ଚଳରେ ରହୁଥିବା ଧନୀ, ଶିକ୍ଷିତ ଲୋକେ, ପାଦ୍ରୀମାନେ ନିଜ ନିଜ ରହିବା ଘରେ ସରୁ ଲୁହା ଜାଲି ଲଗାଇଥାନ୍ତି । ସେ ଅଞ୍ଚଳରେ ସରକାରୀ ଘର ଓ ବଙ୍ଗ-ଳାରେ ମଧ୍ୟ ସେହିପରି ସରୁ ଲୁହା ଜାଲି ଖଞ୍ଜା ହୋଇଥାଏ ।

ଆମେରିକାର ପାନାମା ଯୋଜକ ନାଲ କଥା ଶୁଣିଥିବେ ଓ ପଢିଥିବେ । ଏହା ଆଟ୍‌ଲାଣ୍ଟିକ ଓ ପ୍ରଶାନ୍ତ ମହାସାଗର ଦୁଇଟିକୁ ଯୋଗ କରୁଛି । ଏହି ନାଲ ତିଆରି ହେବା ବେଳେ ପାନାମା ଅଞ୍ଚଳ ଭୀଷଣ ଭାବରେ ମାଲେରିଆ ରୋଗ ଦ୍ୱାରା ଆକ୍ରାନ୍ତ ଥିଲା । ସେଠାରେ କେହି ତିଷ୍ଠି ପାରୁ ନ ଥିଲେ । ପାନାମା କେନାଲ କମ୍ପାନୀର ବଡ଼ ବଡ଼ ଇଞ୍ଜିନିୟରଙ୍କଠାରୁ ଆରମ୍ଭ କରି ମାଟି ଖୋଳିବା କୁଲି ପର୍ଯ୍ୟନ୍ତ କର୍ମୀମାନେ ଭୀଷଣ ମାରାତ୍ମକ ମାଲେରିଆ ରୋଗି ମରିଯାଉଥିଲେ । କେହି କେହି ପ୍ରାଣ ବଞ୍ଚାଇ ନିଜ ଦେଶକୁ ପଳାଇ ଆସୁଥିଲେ । ଫଳରେ କେନାଲ ଖୋଳା କାମ ଅଗେଇଲା ନାହିଁ । ଡାକ୍ତରମାନେ ମଶା ଓ ମାଲେରିଆର ସମ୍ବନ୍ଧ ଜାଣିପାରି ସରୁ ଲୁହା ଜାଲି ଖଞ୍ଜା ହୋଇଥିବା ଘରର ବ୍ୟବସ୍ଥା କଲେ । ଦିନଯାକ କେନାଲ ଖୋଳା କାମ କରନ୍ତି । ସନ୍ଧ୍ୟା ପୂର୍ବରୁ ଲୁହା ଜାଲି ଘରେ ଅଶ୍ରୟ ନିଅନ୍ତି । ଏହି ବ୍ୟବସ୍ଥା ଓ ଅନ୍ୟାନ୍ୟ ମାଲେରିଆବିରୋଧୀ ବ୍ୟବସ୍ଥା ଫଳରେ କେନାଲ କର୍ମୀମାନଙ୍କୁ ମାଲେରିଆ ଆଉ ଧରିଲା ନାହିଁ, ଶୀଘ୍ର କେନାଲ ଖୋଳା କାମ ଅବାଧରେ ସମ୍ପୂର୍ଣ୍ଣ ହେଲା । ମଣିଷର ବୈଜ୍ଞାନିକ ବୁଦ୍ଧି ଓ ପ୍ରତିଭା ଯୋଗୁଁ ସମଗ୍ର ପୃଥିବୀରେ ଏଡ଼େ ବଡ ଐତିହାସିକ କୀର୍ତ୍ତି ସମ୍ଭବପର ହେଲା ।

## (ଗ) ଉଜ୍ଜ୍ୱଳ ଆଲୁଅ—

ମଶା ଆଲୁଅକୁ ପସନ୍ଦ କରେ ନାହିଁ । ସେଥିପାଇଁ ଦିନ-ବେଳେ ଅନ୍ଧାରୁଆ ସ୍ଥାନମାନଙ୍କରେ ଲୁଚି ରହିଥାଏ । ରାତି ହେଲେ

ଏଣେ ତେଣେ ଉଡ଼ି ନିଜର ଖାଇବା ଜିନିଷ ଖୋଜିବୁଲେ । ସାଧାରଣ ଦୀପ, ଡିବି, ଲଣ୍ଠନ ଓ ଅଳ୍ପଶକ୍ତି ବିଶିଷ୍ଟ ବିଜୁଳିବତୀର ଆଲୁଅକୁ ମଶା ଡରେ ନାହିଁ । ସେଥିପାଇଁ ଅଳ୍ପ ଆଲୁଅରେ କାମ କଲେ ବା ଅନ୍ଧାର ଘରେ ବସି ରହିଲେ ବା ଶୋଇଲେ ମଶା କାମୁଡେ । ପେଟ୍ରୋମାକ୍ସ ଲାଇଟ୍ ବା ବଡ଼ ବିଜୁଳିବତି ପରି ଖୁବ୍ ଉଜ୍ଜ୍ୱଳ ଆଲୁଅ ବ୍ୟବହାର କଲେ ମଶା ପାଖରେ ପଶି ପାରେ ନାହିଁ । ଆଲୁଅର ଶକ୍ତି ଶହେ ମହମ୍‌ବତୀ ଆଲୁଅଠାରୁ କମ୍ ହେବା ଉଚିତ ନୁହେଁ । ମାଲ ଅଞ୍ଚଳରେ କାମ କରୁଥିବା ବାବୁଭୟ୍ୟାମାନେ ରାତିରେ ପେଟ୍ରୋମାକ୍ସ ଲାଇଟ୍ ଜଳାଇ ରଖି ଭୀଷଣ ଶତ୍ରୁ ମଶାଠାରୁ ରକ୍ଷାପାଆନ୍ତି । ଥିଲାବାଲା ଲୋକେ ଏହିପରି ଖର୍ଚ୍ଚରୁ ପଛାଇବା ଉଚିତ ନୁହେଁ ।

## (ଘ) ଦେହର ଆବରଣ

ମନୁଷ୍ୟ ଦୈନନ୍ଦିନ କର୍ତ୍ତବ୍ୟ ପାଇଁ ରାତିରେ ଘର ଭିତରେ ନ ରହି ବାହାରେ ବୁଲାବୁଲି କରିଥାଏ । ସେତେବେଳେ ମଶାରି,ସବୁଲିହା ଜାଲି ବା ଉଜ୍ଜ୍ୱଳ ଆଲୁଅ ଉପରେ ନିର୍ଭର କରି ହେବ ନାହିଁ । ସେଥି ସକାଶେ ଅନ୍ୟାନ୍ୟ ଦେଶରେ ମୁଣ୍ଡଠାରୁ ଗୋଡ଼ ପର୍ଯ୍ୟନ୍ତ ଘୋଡ଼ାଇ ହୋଇ ଲୋକେ ବାହାରକୁ ବୁଲି ବାହାରନ୍ତି ।

ଦେହ ହାତରେ ଜାମା, ଗୋଡ଼ରେ ତଳିପା ପର୍ଯ୍ୟନ୍ତ ମୋଟା ଝାଣ୍ଡିଆ ପାଇଜାମା ପିନ୍ଧି, ତଳିପାରେ ମୋଜା ମଡ଼ାଇ, ଯୋତା ପିନ୍ଧନ୍ତି । ହାତଠାରୁ ପାପୁଲିରେ କଚଟି ପର୍ଯ୍ୟନ୍ତ ତୁଳା, ପଶମ ବା କଅଁଳ ହୋଇଥିବା ଚମର ଦସ୍ତାନା ପିନ୍ଧନ୍ତି । ମୁଣ୍ଡରେ ଟୋପି ଦେଇ ଟୋପି ଧାରି ପାଖରୁ ଝୁଲା ହୋଇଥିବା ସରୁ ଜାଲର କନାରେ ତିଆରି ଏକପ୍ରକାର ଜାଲର ମୁଖା ପିନ୍ଧନ୍ତି । ଏହାଦ୍ୱାରା ମୁଣ୍ଡ ମୁହଁ, ବେକକୁ ଘୋଡ଼ାଇବାର ବ୍ୟବସ୍ଥା ହୋଇଯାଏ। ଅଥଚ ଦେଖିବା ବା ନିଃଶ୍ୱାସ ମାରିବାରେ

ବ୍ୟାଘାତ ହୁଏ ନାହିଁ । ମଶା ଆଉ ମଣିଷର କୌଣସି ଅଙ୍ଗ କାମୁଡ଼ିବାକୁ ସୁଯୋଗ ପାଏ ନାହିଁ । ଆମ ଦେଶର ପର୍ଦ୍ଦାନସିନ ମୁସଲମାନ ମାଇପେ ମୁଣ୍ଡଠାରୁ ଗୋଡ଼ ପର୍ଯ୍ୟନ୍ତ ବୁର୍ଖା ବୋଲି ଏକପ୍ରକାର ପୋଷାକ ପିନ୍ଧନ୍ତି । ଦୁଇ ଆଖିର ସାମନାରେ ଖୁବ୍ ଛୋଟ କଣା ଥାଏ । ଲୋକେ ହସିଲେ ସୁଦ୍ଧା ମଶା-ବହୁଳ ଜାଗାରେ ବୁର୍ଖା ପିନ୍ଧି ବାହାରକୁ ବାହାରିଲେ ନିରାପଦ । ଅନ୍ତତଃ ମାଇପେ ରାତିରେ ବାହାରକୁ ବାହାରିଲେ ବୁର୍ଖାଟିଏ ପିନ୍ଧିଲେ ଭଲ ହୁଅନ୍ତା ।







## (ଙ) ତେଲ ହଳଦୀ

କିନ୍ତୁ ଏହିସବୁ ଉପାୟମାନ ମଶା କାମୁଡ଼ାରୁ ରକ୍ଷା ପାଇବାରେ ଅନିବାର୍ଯ୍ୟ ଥିଲେ ସୁଦ୍ଧା ଏଗୁଡ଼ିକ କେବଳ ବଡ଼ଲୋକଙ୍କୁ ସାଜେ ।

ଗରିବ ଲୋକେ ଏହିସବୁ ଉପାୟ ଅବଲମ୍ବନ କରିପାରିବେ ନାହିଁ । ଆମ ଦେଶର ବେଶୀ ଲୋକ ଗରିବ । ଅନେକଙ୍କୁ ପେଟକୁ ଦାନା, ଦେହକୁ କନା ଖଣ୍ଡେ ଯୁଟେ ମିଳେ ନାହିଁ । ଅସନା କୁଡ଼ିଆ ଘରେ ରହି ଭୋକଶୋଷରେ ଦିନ କଟାନ୍ତି । ସେମାନେ ମଶାରି କେଉଁଠୁ ପାଇବେ ବା ଗ୍ରାମରେ ବିଜୁଳି ଆଲୁଅ କି ପେଟ୍ରୋମାକ୍ସ ଆଲୁଅ କୁଆଡ଼ୁ ପାଇବେ ? ସବୁ ଲମ୍ବା ଜାଲିଦିଆ ଘର, ଜୋତା, ମୋଜା, ଦସ୍ତାନା ତ ବହୁଦୂରର କଥା । ସେମାନଙ୍କ ପାଇଁ ମ୍ୟାଲେରିଆରୁ ରକ୍ଷା ସକାଶେ ଯେ ଉପାୟ ନାହିଁ ତାହା ନୁହେଁ; କେବଳ ସେମାନଙ୍କର ଉପାୟଗୁଡ଼ିକୁ ଜାଣିବା ଦରକାର ଓ ଜାଣି ସେଗୁଡ଼ିକୁ ପାଳିବା ଉଚିତ । ଉପାୟ ହେଉଛି—ତେଲ, ହଳଦୀ, ଧୂଆଁ । କାରଣ ତେଲ ଲଗିଥିବା ଜାଗାରେ ମଶା କାମୁଡ଼ି ପାରେ ନାହିଁ କିମ୍ବା ଉଗ୍ର ଗନ୍ଧର ପାଖେ ପଶେ ନାହିଁ । ସେତେ ଗରିବ ହେଲେ ମଧ୍ୟ ତେଲ ହଳଦି ସମସ୍ତଙ୍କୁ ସହଜରେ ମିଳେ । ଆମ ଦେଶରେ ବିଶେଷତଃ ଆମ ଓଡ଼ିଶା ପ୍ରଦେଶରେ ଏହି ଦୁଇଟି ଦ୍ରବ୍ୟର ଅଭାବ କୌଣସିଠାରେ ନ ଥାଏ । ରାଶି, ସୋରିଷ, ଜଡ଼ା, ପୋଲଙ୍ଗ, ନିମ୍ବ, କରଞ୍ଜ, ଭୁଇଁଚଣା ( ଚିନା-ବାଦାମ ) ଓ ନଡ଼ିଆ ପରି ବହୁତ ପ୍ରକାର ତେଲ ଗଛ ଦେଖାଯାଏ ସମବେତ ଚେଷ୍ଟା ଓ ସାହାଯ୍ୟ ମିଳିଲେ ପ୍ରଚୁର ପରିମାଣରେ ତେଲ ମିଳିପାରେ । ହଳଦୀ ସମସ୍ତ ମାଳ ଅଞ୍ଚଳରେ ପ୍ରଚୁର ପରିମାଣରେ ଉପୁଜେ । ଅତି ଅଳ୍ପ ପରିଶ୍ରମରେ କନ୍ଧ, ଶବରଙ୍କ ପରି ଆଦିମ ଜାତି-ମାନେ ହଳଦୀ ଚାଷ କରନ୍ତି । ଛୋଟ ବଡ଼ ବେପାରୀମାନେ ସେମାନଙ୍କ ଠାରୁ ହଳଦୀ କିଣି ସମତଳର ଲୋକମାନଙ୍କୁ ଧାନ,ଚାଉଳ ବା ପଇସା, ବଦଳରେ ବିକନ୍ତି । ଚେଷ୍ଟା କଲେ ଖୋର୍ଦ୍ଧା,ବାଙ୍କି, ଡମ୍ପଡ଼ା, ସୁକିନ୍ଦା ଅନୁଗୁଳ, ସମ୍ବଲପୁର, ବରଗଡ଼, ଖଡ଼ିଆଲ, ପାରଳାଖେମୁଣ୍ଡି, ରସଲ-କୋଣ୍ଡା ପ୍ରଭୃତି ପାହାଡ଼ିଆ ଉଚ୍ଚା ଜାଗାମାନଙ୍କରେ ହଳଦୀ ଚାଷ

କରାଯାଇପାରେ । ଜଙ୍ଗଲର ଏକପ୍ରକାର ଗଛର କ୍ଷୀରରୁ ଝୁଣା ଆମ-ଦାନୀ ହୁଏ । ଏହା ମଧ୍ୟ ଆମ ଦେଶରେ ବିରଳ ନୁହେଁ ।

ସଞ୍ଜବେଳେ ଦେହ, ହାତ, ଗୋଡ଼ ମୁହଁରେ ତେଲ, ହଳଦୀ, ଝୁଣା ଲଗାଇଲେ ସେତେବେଳେ ଆଉ ମଶା କାମୁଡ଼େ ନାହିଁ । ତାହାଙ୍କୁ ଭୁଲ୍ ବାହାରିଲେ ହାତରେ ମୁହଁରେ ଓ ଗୋଡ଼ରେ ତେଲ ମାରି ଦେଲେ ନିରାପଦ । ତେଲିଆ ଜାଗାରେ ମଶା ବସେ ନାହିଁ କି କାମୁଡ଼େ ନାହିଁ । ପୋଲଙ୍ଗ, ନିମ୍ବ, କରଞ୍ଜ ତେଲର ଅଂଶ ଟିକିଏ ସୁଦ୍ଧା ଥିଲେ ମଶା ପାଖରେ ପଶିପାରେ ନାହିଁ । ହଳଦୀ ପିତା ଓ ତାର ତୀକ୍ଷ୍ଣ ବାସନା ଅଛି । ହଳଦୀ ଲଗିଥିବା ଅଙ୍ଗରେ ମଶା ବସେ ନାହିଁ । ହଳଦୀରେ ଝୁଣା, ଚନ୍ଦନ, କର୍ପୂର, ଅଗୁରୁ ବା କୁଙ୍କୁମ ପଡ଼ିଥିଲେ ବଡ଼ ସୁନ୍ଦର ସୁଗନ୍ଧ ହୁଏ ଓ ମଶା ଏକଦମ୍ ପାଖେ ପଶେ ନାହିଁ । ଝୁଣା, ଚନ୍ଦନ, କର୍ପୂର ଇତ୍ୟାଦି ଆଗେ ବିଳାସର ସାମଗ୍ରୀ ବୋଲି ଗଣା ହେଉଥିଲା ।

ଆଗେ ପିଲା, ଯୁବା, ବୁଢ଼ା, ସ୍ତ୍ରୀ, ପୁରୁଷ, ଗରିବ, ଧନୀ ସମସ୍ତେ ତେଲ ହଳଦୀ ଲଗାଉଥିଲେ । ବଡ଼ ଦୁଃଖର କଥା, ନୂଆ ଫେସନ ଲାଗି ତେଲ ହଳଦୀକୁ ଏବେ ପାଠୁଆ ଲୋକେ ଘୃଣା କରୁଛନ୍ତି; ପୁରୁଣା ବର୍ବର ପ୍ରଥା ବୋଲି ଧରୁଛନ୍ତି । କିନ୍ତୁ ଏହା ଗୋଟିଏ ଭୟାନକ ଭୁଲ । ତିରିଶ ପଅଁତିରିଶ ବର୍ଷ ପୂର୍ବେ ଆମ ଓଡ଼ିଶା ପ୍ରଦେଶରେ ମାଲେରିଆ, ବାତଜ୍ୱର ପ୍ରଭୃତି ମଶା କାମୁଡ଼ାରେ ହେଉଥିବା ରୋଗ ଅଳ୍ପ ପରିମାଣରେ ଥିଲା । ମଶା ମଧ୍ୟ ଥିଲେ; କିନ୍ତୁ ରୋଗର ପ୍ରାଦୁର୍ଭାବ ନ ଥିଲା । କେତେକ କାରଣ ମଧ୍ୟରୁ ତେଲ ହଳଦୀର ବ୍ୟବହାର ଓ ଆଦର ଯୋଗୁଁ ରୋଗ ବ୍ୟାପି ନ ଥିଲା । ତେଲ ହଳଦୀର ଅନାଦର ଯୋଗୁଁ ମ୍ୟାଲେରିଆ, ବାତଜ୍ୱର, କାଛୁ, କୁଣ୍ଡିଆ, ବଇଁଶି, କୁଷ୍ଠ ଓ ଅନ୍ୟାନ୍ୟ ଚର୍ମ ରୋଗର ପରିମାଣ ବଢ଼ୁଛି । ଆଉ ଗୋଟିଏ କଥା, ଆମ ଓଡ଼ିଶାର ଗ୍ରାମପାଖେ

ପ୍ଲେଗ ମହାମାରୀ ବ୍ୟାପି ରହିଛି ; କିନ୍ତୁ ସୁଖର କଥା, ଏପର୍ଯ୍ୟନ୍ତ ଆମ ଓଡ଼ିଶାରେ ପଶି ପାରି ନାହିଁ । ଅନେକ ବିଜ୍ଞ ଡାକ୍ତର କହନ୍ତି, ଓଡ଼ିଆ-ମାନେ ବର୍ତ୍ତମାନ ସୁଦ୍ଧା, ତେଲ ହଳଦୀ କରି ଲଗାଉ ଥିବାରୁ ପ୍ଲେଗ ଏ ପ୍ରଦେଶକୁ ଆସି ନାହିଁ । ଏଥିରୁ ଜଣାଯାଉଛି ତେଲ ହଳଦୀ ଆମର କେତେ ଉପକାରୀ । ଏ ଦୁଇଟିର ଅନାଦର ଯୋଗୁଁ ଆମ ଜାତୀୟ ଜୀବନରେ ବହୁ କ୍ଷତି ହେଉଛି ଓ ଭବିଷ୍ୟତରେ ହେବ । କେତେକ ବୈଜ୍ଞାନିକଙ୍କ ମତରେ ହଳଦିଆ ଅଲୁଅରେ ମଶା ରହେ ନାହିଁ । ଘରକାନ୍ଥରେ ହଳଦୀ ରଙ୍ଗ ଦେଲେ , ହଳଦିଆ ଲୁଗା ପିନ୍ଧିଲେ, ଦେହରେ ହଳଦୀ ଲଗାଇଲେ, ହଳଦିଆ ଅଲୁଅ ବାହାରୁଥାଏ । ଫଳରେ ମଶା ରହେ ନାହିଁ କି କାମୁଡ଼େ ନାହିଁ ।

ଥିଲବାଲା ଲୋକେ ଓ ମାଳଅଞ୍ଚଳରେ କାମ କରୁଥିବା ବାବୁ-ଭଇୟାମାନେ ଏବେ ସିଟ୍ରୋନେଲ ବୋଲି ସୁଗନ୍ଧ ଲେମ୍ବୁତେଲ ହାତ ମୁହଁରେ ଲଗାଇ ମଶା କାମୁଡ଼ାରୁ ନିଜ ନିଜକୁ ରକ୍ଷା କରୁଛନ୍ତି । ଏହାର ଦାମ ବେଶୀ; ସାଧାରଣ ଲୋକେ ଏହାକୁ ବ୍ୟବହାର କରି ପାରିବେ ନାହିଁ । କିନ୍ତୁ ଏହା ପରିବର୍ତ୍ତରେ ଖୁବ୍ କମ ଦାମରେ ଘରେ ସୁଗନ୍ଧ ତେଲ ତିଆରି କରାଯାଇ ପାରେ । ନଡ଼ିଆ ତେଲରେ ଲେମ୍ବୁ ଚୋପା ଖଣ୍ଡ ଖଣ୍ଡ କରି କାଟିପକାଇବ, ଟିକିଏ କର୍ପୂର ପକାଇ ନିଆଁରେ ୧୫ ମିନିଟ ଫୁଟାଇ ନେବ । ଏହା ପରେ ତେଲକୁ ଛାଣି ବୋତଲରେ ରଖିବ । ହାତରେ ମୁହଁରେ ଏଥିରୁ ଟିକିଏ ଟିକିଏ ଘଷି ଲଗାଇ ଦେଲେ ମଶା ଆଉ କାମୁଡ଼ିବେ ନାହିଁ । ଏଥିରେ ରୁଚି ଅନୁସାରେ ଅତର ଦିଆ-ଯାଇ ପାରେ ।

## (ଚ) ଧୂପ ଓ ଧୂଆଁ—ସ୍ମୋକ୍ (ସମ୍ପ)

ସନ୍ଧ୍ୟାବେଳେ ଘରେ ଧୂପ ଜାଳିଲେ ମଶା ଆଉ ଘରେ ପଶନ୍ତି ନାହିଁ । ଝୁଣା, ଗୋଗୁଳ, ଲୋବାନ୍ ବତି ଓ କେଟଟେଲ୍, ପ୍ରଭୃତି ଧୂପ

ଦେଲେ ମଶା ଘରୁ ପଳାନ୍ତି । କିନ୍ତୁ ସମସ୍ତଙ୍କ ଭାଗ୍ୟରେ ଧୂପ ଜାଳିବା ସହଜ ନୁହେଁ । ନଡ଼ା, ପାଳ, ଘଷି ଓ କାଠ ଜାଳି ଘରେ ଧୂଆଁ ଦିଆଯାଇ ପାରେ । ସେଥିରେ କଞ୍ଚା ନିମ୍ବପତ୍ର ପକାଇଲେ ଆହୁରି ଭଲ । ଏହା ହେଉଛି ଗରିବ କୁଡ଼ିଆରୁ ମଶା ତଡ଼ିବାର ପ୍ରଧାନ ଉପାୟ । ଆଜିକାଲି ସୁଦ୍ଧା ଗାଁମାନଙ୍କରେ ସନ୍ଧ୍ୟା ହେଲେ ଘରେ ଧୂଆଁ ଦିଅନ୍ତି । କିନ୍ତୁ ଧୂପ ବା ଧୂଆଁ ସରିଗଲେ ମଶା ପୁଣି ଫେରି ଆସନ୍ତି । ସେଥିପାଇଁ ରାତିଯାକ ପାଇଁ ସାମାନ୍ୟ ଧୂପ ଧୂଆଁର ବନ୍ଦୋବସ୍ତ କରିରଖିବା ଦରକାର । ଏଥିପାଇଁ କେଚଲି ହେଉଛି ଉପଯୁକ୍ତ ବିଧାନ । କିନ୍ତୁ ଏହା ସମସ୍ତଙ୍କ ଭାଗ୍ୟରେ ଘଟେ ନାହିଁ ।

ସ୍ପ୍ରେ ବା ପମ୍ପ ସାହାଯ୍ୟରେ ମଶାମରି ଯାଇପାରେ ; ଅନ୍ତତଃ ତଡ଼ା ଯାଇପାରେ । ମଶା କାମୁଡ଼ାରୁ ରକ୍ଷାପାଇବା ନିମିତ୍ତ ଏହା ହେଉଛି ପ୍ରକୃଷ୍ଟ ଉପାୟ । ଦେଢ଼ ଟଙ୍କାରେ ଗୋଟିଏ ସ୍ପ୍ରେ ଯନ୍ତ୍ର ମିଳିବ । ପାଇରୋସାଇଡ଼ (Pyrocide) ବୋଲି ମଶାମରା ତେଲ ବଜାରରେ ବିକି ହୁଏ । କେନ୍ଦ୍ରାପଡ଼ା ମ୍ୟୁନିସପାଲିଟି କଣା ଦାମରେ ଏହା ଲୋକ-ମାନଙ୍କୁ ବିକିକରେ । ଏଥିରୁ ଏକଭାଗ ଓ ସଫା କିରାସିନି ୧୯ ଭାଗ ମିଶାଇ ସ୍ପ୍ରେ ଯନ୍ତ୍ର ସାହାଯ୍ୟରେ ଘରେ ଓ ବାରଣ୍ଡାରେ ସନ୍ଧ୍ୟା ପରେ ଥରେ ଦୁଇଥର ସ୍ପ୍ରେ ମାରିଦେଲେ ରାତିସାରା ଆଉ ମଶା ଘରେ ପଶନ୍ତି ନାହିଁ । ଏହିପରି କିଛିଦିନ କଲେ ମଶା ଆଉ କେବେ ଆସିବେ ନାହିଁ । ଗୋଟିଏ ସାଧାରଣ କୋଠରୀ ପାଇଁ ରାତିକୁ ପଇସାଟିକରୁ ବେଶୀ ଖର୍ଚ୍ଚ ପଡ଼େ ନାହିଁ । ଏହିସବୁ କଥା ଲେଖକ ନିଜ ଅନୁଭୂତିରୁ କହିବାକୁ ସମର୍ଥ ହୋଇଛି । ସନ୍ଧ୍ୟାବେଳେ ନ ମାରି ଖୁବ୍ ବଢ଼ିସକାଳୁ ଦ୍ୱାର, ଝରକା ବନ୍ଦ କରି ସ୍ପ୍ରେ ଯନ୍ତ୍ରରେ ପାଇରୋସାଇଡ଼ ମାରିଲେ ଆହୁରି ଭଲ ଓ କମ୍ ଖର୍ଚ୍ଚ ହୁଏ । ବର୍ଷାଦିନେ ସପ୍ତାହରେ ଥରେ ବା ଦୁଇଥର ମଧ୍ୟ ବଢ଼ିସକାଳୁ ପାଇରୋସାଇଡ଼ ମାରିଲେ ମଶାଦାଉରୁ ରକ୍ଷା ମିଳେ ।

# ମାଲେରିଆ ଜୀବାଣୁଠାରୁ ମଣିଷର ରକ୍ଷା

ଯେତେ ଚେଷ୍ଟା କଲେ ସୁଦ୍ଧା ମନୁଷ୍ୟଙ୍କୁ ମଶା ସମୟେ ସମୟେ କାମୁଡ଼ି ଦିଏ, ମଣିଷ ଦେହରେ କେବେ କେବେ ରୋଗ ଜୀବାଣୁ ଏହିପରି ପଶିଯାନ୍ତି । କିନ୍ତୁ ସୁସ୍ଥ ସବଳ ଥିଲେ ଜୀବାଣୁ ପଶିଲେ ମଧ୍ୟ ମନୁଷ୍ୟଙ୍କୁ ରୋଗ ସହଜରେ ଧରେ ନାହିଁ । ମଣିଷ ଦେହରେ ସାଧାରଣ ରୋଗ-ବିରୋଧୀ ଶକ୍ତି ଜୀବାଣୁମାନଙ୍କର ବଂଶ ବୃଦ୍ଧିରେ ବ୍ୟାଘାତ ଦିଏ ଓ ସେମାନଙ୍କୁ ମାରିପକାଏ । ସେଥିପାଇଁ ଦେଖାଯାଏ ଯେ, ଭୀଷଣ ଭାବରେ ମାଲେରିଆ ଦ୍ୱାରା ଆକ୍ରାନ୍ତ ଅଞ୍ଚଳରେ ସୁଦ୍ଧା ସମସ୍ତଙ୍କୁ ସବୁବେଳେ ମାଲେରିଆ ରୋଗ ଧରେ ନାହିଁ । ଏହାର କାରଣ ହେଉଛି, ଲୋକଙ୍କର ସ୍ୱାଭାବିକ ରୋଗବିରୋଧୀ ଶକ୍ତି । ଯେଉଁମାନଙ୍କ ଏହି ଶକ୍ତି ଯେତେ ବେଶୀ ସେମାନଙ୍କର ରୋଗର ସମ୍ଭାବନା ସେତେ କମ୍; କିନ୍ତୁ ଏହି ରୋଗବିରୋଧୀ ଶକ୍ତି ସବୁବେଳେ ସମାନ ନ ଥାଏ । ଅତି ପରିଶ୍ରମ, ଖାଇବା ଅଭାବ, ଦୈନନ୍ଦିନ ଓ ସ୍ୱାସ୍ଥ୍ୟପ୍ରତି ଅତ୍ୟାଚାରର ଫଳରେ ଏହି ଶକ୍ତି ଊଣା ହୋଇଯାଏ । ସେହି ଅବସ୍ଥାରେ ରୋଗଜୀବାଣୁ ଦେହରେ ପଶିଲେ ରୋଗବିରୋଧୀ ଶକ୍ତିଠାରୁ ବ୍ୟାଘାତ ନ ପାଇ ଜୀବାଣୁମାନେ ନିଜର ବଂଶ ବୃଦ୍ଧି କରନ୍ତି । ଫଳରେ ରୋଗ ହୁଏ ।

ଆଗ କାଳରେ ଆମ ଦେଶରେ ରୋଗର ଏତେ ପ୍ରାଦୁର୍ଭାବ ନ ଥିଲା । ତାହାର କାରଣ ହେଉଛି, ଲୋକମାନେ ଭଲ ଉପାଦେୟ ଖାଦ୍ୟ ପ୍ରଚୁର ପରିମାଣରେ ଖାଇବାକୁ ପାଉଥିଲେ । ଅଭ୍ୟାସ ସେମାନଙ୍କର ଭଲ ଥିଲା । ଆଜି କାଲି ପରି ଏତେ ବଦଭ୍ୟାସ ନ ଥିଲା । ଯଥେଷ୍ଟ ବ୍ୟାୟାମ, ପରିଶ୍ରମ କଲେ ସୁଦ୍ଧା ସେମାନେ ଆମୋଦ ପ୍ରମୋଦ ଓ ବିଶ୍ରାମ କରିବାକୁ ସମୟ ପାଉଥିଲେ । ଦୁଃଖର ବିଷୟ,

ବର୍ତ୍ତମାନ ଏଗୁଡ଼ିକ ବିରଳ । ଫଳରେ ବହୁ ରୋଗ ଆମ ଦେଶରେ ବସା ବାନ୍ଧି ରହିଗଲାଣି ।

ପରିଚ୍ଛନ୍ନତା, ସଦଭ୍ୟାସ, ବ୍ୟାୟାମ, ବିଶ୍ରାମ ଓ ସୁଖାଦ୍ୟ ସ୍ୱାସ୍ଥ୍ୟରକ୍ଷାର ଏହି ପାଞ୍ଚଗୋଟି ମୌଳିକ ନିୟମ ହାତର ପାଞ୍ଚ ଆଙ୍ଗୁଠିରେ ଗଣି ମନେ ରଖିବାକୁ ପିଲାଙ୍କୁ ଉପଦେଶ ଦିଆ ହୋଇଥାଏ ।




ଧର୍ମଶାସ୍ତ୍ରରେ ଆହାର, ନିଦ୍ରା, ବିହାରରେ ସଂଯମ ଓ ବ୍ରହ୍ମଚର୍ଯ୍ୟର ଭୂରି ପ୍ରଶଂସା କରାଯାଇଥାଏ । ଏଗୁଡ଼ିକ ଆମର ବ୍ୟକ୍ତିଗତ ଓ ସମାଜଗତ ଜୀବନରେ କାର୍ଯ୍ୟରେ ପରିଣତ ହେଉଥିଲେ, ଅନ୍ତତଃ ସେ ଦିଗରେ ଚେଷ୍ଟା ହେଉଥିଲେ, ରୋଗ, ଦୁଃଖ, ଶୋକ ଉଭେଇ ଯାନ୍ତା, ଅନ୍ତତଃ କମିଯାନ୍ତା ।

ମାଲେରିଆ ଆକ୍ରାନ୍ତ ଅଞ୍ଚଳରେ ବସବାସ କରୁଥିଲେ ନିଜର ସ୍ୱାଭାବିକ ରୋଗପ୍ରତିରୋଧୀ ଶକ୍ତିକୁ ଅକ୍ଷୁର୍ଣ୍ଣ ରଖିବାକୁ ହେବ । ସେଥି-ପାଇଁ ଦୈନନ୍ଦିନ ସମସ୍ତ କାର୍ଯ୍ୟରେ ଷୋଳଅଣା ସଂଯମ ରଖିବାକୁ ହେବ ।

## ୨ । ମଶା

**ବଂଶବୃଦ୍ଧି** — ମାଲେରିଆ ବିଜ୍ଞଙ୍କର ମଣିଷ ବାହୁ ବିଷୟରେ ପୂର୍ବରୁ କୁହାଯାଇଅଛି । ବର୍ତ୍ତମାନ ମଶା ବାହୁ ବିଷୟରେ ବିଚାର କରାଯାଉ । ମଣିଷ ବାହୁକୁ ଉଡ଼ାଇ ଦେଇ ହେବ ନାହିଁ । କିନ୍ତୁ ମଶା ବାହୁକୁ ଉଡ଼ାଇ ଦେଲେ ମଙ୍ଗଳ । ମଶାକୁ ସବଂଶେ ନାଶ କରିବାର ଉପାୟ ଜାଣିବା ପୂର୍ବରୁ ମଶାର ବଂଶବୃଦ୍ଧି ବିଷୟରେ ପଦେ ଅଧେ ଜାଣିବା ଉଚିତ । ମଶା ଜୀବନରେ ଚାରିଗୋଟି ସ୍ୱତନ୍ତ୍ର ଅବସ୍ଥା ଅଛି । ଗର୍ଭିଣୀ

ମାଈ ମଶା ପାଣିରେ ଡିମ୍ବ ଦିଏ । ଏକ ସମୟରେ ହଜାର ହଜାର ଡିମ୍ବ ପାରେ । ପାଣିରେ କେତେ ଦିନ ଭାସି ଭାସି ଡିମ୍ବ ଫାଟେ । ପ୍ରତ୍ୟେକ ଡିମ୍ବରୁ ସାଁବାଳୁଅପରି ଗୋଟିଏ ଲେଖାଏଁ ପୋକ ବାହାରେ, ଖୁବ୍ କ୍ଷୀପ୍ର ଗତିରେ ସେ ପାଣିରେ ଏଣେତେଣେ ବୁଲବୁଲ କରେ । ଖୁବ୍ ଛୋଟ ଛୋଟ ପୋକ ଖାଇ ଦିନକୁ ଦିନ ବଢ଼େ । କିଛିଦିନ ପରେ ଅଉ ଦୌଡ଼ାଦୌଡ଼ି ନ କରି ଧୀର ହୋଇ ପଡ଼ିରହେ । ଅଣ୍ଟା ମୋଟା ଅବରଣ ଗୋଟିଏ ଆସି ତା ଦେହରେ ଢଙ୍କେ । ଏହି ଅବସ୍ଥାକୁ ଗୋଟି-



ଅନୋଫିଲସ୍ ମଶା       କ୍ୟୁଲେକ୍ସ ମଶା





ମଶାର ସାଁବାଳୁଅ ଅବସ୍ଥା

ପୋକ ଅବସ୍ଥା କହନ୍ତି । ଭିତରେ ଭିତରେ ମଶାର ଦେହ ତିଆରି ହେଉଥାଏ । ଶେଷରେ ଅଣ୍ଟା ମୋଟା ଅବରଣ ଫାଟି ମଶାଟିଅ ବାହାରକୁ ବାହାରେ । ଗୋଡ଼, ପକ୍ଷୀ ହଲାଇ ଉଡ଼ିଯାଏ । ଡିମ୍ବ ଅବସ୍ଥା, ସାଁବାଳୁଅ ଅବସ୍ଥା, ଗୋଟିପୋକ ଅବସ୍ଥା ଓ ପୂର୍ଣ୍ଣାଙ୍ଗ ଅବସ୍ଥା ଏହିପରି ମଶାର

ସ୍ଥିତିଗୋଟି ଅବସ୍ଥା ପାଣି ଉପରେ ନିର୍ଭର କରେ । ପାଣି ହେଉଛି ମଶା ବଂଶ ବୃଦ୍ଧିର ପ୍ରଧାନ ସ୍ଥଳ । ପାଣିର ଅଭାବରେ ମଶାର ବଂଶ ବୃଦ୍ଧି ଅସମ୍ଭବ । ମଶା ଯେପରି ପାଣି ପାଖକୁ ଯାଇ ନ ପାରେ ଏବଂ ପାଣିରେ ତାର ଡିମ୍ବ , ସାଁବାଳୁଆ ଓ ଗୋଟିପୋକ ଅବସ୍ଥା ତିଷ୍ଠି ନ ପାରେ ତାର ଉପାୟ କଲେ ମଶାର ବଂଶ ବୃଦ୍ଧି ବନ୍ଦ ହୋଇଯିବ । ମଶା ବାହୁ ଅନ୍ତର୍ହିତ ହୋଇ ମାଲେରିଆ ନିର୍ଭୁଳ ଭାଙ୍ଗିଯିବ । ମାଲେରିଆ ରୋଗ ଓ ମଶାଜନିତ ସମସ୍ତ ରୋଗ ଆଉ ରହିବ ନାହିଁ ।

ଉଡ଼ନ୍ତା ମଶାକୁ ଧରି ମାରିବା କାଠିକର ପାଠ । କିନ୍ତୁ ପାଣିରେ ରହୁଥିବା ଡିମ୍ବ, ସାଁବାଳୁଆ ଓ ଗୋଟିପୋକ ଅବସ୍ଥାରେ ମଶାଙ୍କୁ ସବଂଶରେ ସହଜରେ ନିବାରଣ କରିହେବ । ଥିର ପାଣିରେ ସାଧାରଣତଃ ମଶା ଡିମ୍ବ ଦିଏ । ଯେଉଁ ଯେଉଁ ଅଞ୍ଚଳରେ ପାଣି ଜମି ରହେ ସେଠାରେ ମଶା ବେଶୀ ହୁଅନ୍ତି । ପାହାଡ଼ିଆ ଅଞ୍ଚଳରେ ଦୁଇ ପାହାଡ଼ ମଝିରେ ଥିବା ଖାଲୁଆ ଜାଗାରେ ପାଣି ଜମେ; ପାହାଡ଼ ତଳ ଜାଗାରେ ମଧ୍ୟ ଠାଏ ଠାଏ ପାଣି ଜମି ରହେ । କେତେକ ଜାଗାରେ ଝରଣାରୁ ପାଣି ବାହାରି ଝରଣା ତଳେ ଖାଲ କରିଦିଏ । ସେଥିରେ ମଧ୍ୟ ପାଣି ରହେ । ନଈ କୂଳରେ ପାଣି ରହିଥାଏ । ନଈ ଅତଡ଼ା କଡ଼ରୁ ଖସିଗଲେ ମଧ୍ୟ ପାଣି ଝରି ଝରି ଠାଏ ଠାଏ କୂଳରେ ଜମେ । ଜଳ ପ୍ରବାହର ସ୍ୱାଭାବିକ ପଥରେ ରେଳପଥ ବସାଇଲେ ପାଣି ଜମି ରହେ । ତଳ ମାଳରେ, ସମୁଦ୍ରପାଖ ଅଞ୍ଚଳରେ ନଈପାଣି ବହୁଦିନ ଜମି ରହେ । ସମୁଦ୍ରକୂଳ ଅଞ୍ଚଳ ଖୁବ୍ ସମତଳଥିଲେ ଜୁଆର ଉପକୂଳର ବହୁତ ଭିତରକୁ ଚାଲିଆସେ । ଜୁଆର ଫେରି ଗଲାବେଳେ ସବୁ ପାଣି ଫେରି ନ ଯାଇ ସ୍ଥାନେ ସ୍ଥାନେ ଜମି ରହେ । କେତେକ ଜାଗାରେ ବାଲି ଜମି ଜମି କାଳକ୍ରମେ ସମୁଦ୍ରର ଖଣ୍ଡେ ଖଣ୍ଡେ ଅଂଶ ସମୁଦ୍ରଠାରୁ ଅଲଗା ହୋଇଯାଏ । ସେଥିରେ ମଧ୍ୟ ଲୁଣିପାଣି ଜମି ରହେ । ପାଚ,

ଦଳଦଳିଆ ଭୂମି ଓ ଧାନ ବିଲରେ ପାଣି ଜମି ରହିବାରୁ ମଶା ସେଥିରେ ଡିମ୍ବ ଦେଇ ବଂଶ ବୃଦ୍ଧି କରେ । ଏହିସବୁ ପ୍ରକୃତିଗତ କାରଣରୁ ପାଣି ଜମି ରହେ ଓ ମଶାର ବଂଶ ବୃଦ୍ଧିପାଏ । ସ୍ୱାଭାବିକ ଜଳାଶୟ ଛଡ଼ା ମନୁଷ୍ୟ କୃତ୍ରିମ ଭାବରେ ଅନେକ ସ୍ଥାନରେ ପାଣି ଜମାଏ । ବନ୍ଧବାନ୍ଧ ମାଟିଖୋଳ ପୋଖରୀ ତିଆରି କରେ । ଘର ତିଆରି କରିବାପାଇଁ ଓ ଇଟା ତିଆରି କରିବାପାଇଁ ମାଟି ଖୋଳିନେବାରେ ଏଣେତେଣେ ବହୁତ ଖାଲ ହୋଇଯାଏ । ବର୍ଷା ଅଭାବ ସ୍ଥାନରେ ପାଣି ଯୋଗାଇ କୃଷି କରାଇବାପାଇଁ ମନୁଷ୍ୟ କେନାଲ ଖୋଳାଏ । ସେଥି-ଯୋଗୁଁ ମଧ୍ୟ ଏଣେତେଣେ ପାଣି ଜମେ । ପଞ୍ଜାବ ପ୍ରଦେଶରେ ପାଞ୍ଚ ଗୋଟି ବଡ ବଡ଼ ନଦୀ ବହିଯାଇ ସିନ୍ଧୁନଦୀରେ ପଡ଼ୁଛି । ହିମାଳୟ ପଶ୍ଚିମ ଅଂଶରୁ ଅମାପ ଜଳରାଶି ଏହିବାଟେ ଆରବ ସାଗରକୁ ବର୍ଷକୁ ବର୍ଷ ବହି ଯାଇଥାଏ । ପଞ୍ଜାବ ଓ ସିନ୍ଧୁପ୍ରଦେଶରେ ନାମକରଣ ଛଡ଼ା ଏହି ଅମିତ ପ୍ରାକୃତିକ ଜଳ ପ୍ରବାହ ମନୁଷ୍ୟର କୌଣସି ହିତରେ ଲାଗୁ ନ ଥିଲା । ବର୍ଷା ଅଭାବରୁ ପଞ୍ଜାବ ଓ ସିନ୍ଧୁ ପ୍ରଦେଶର ବହୁ ଅଂଶ ମରୁଭୂମି ହୋଇ ପଡ଼ି ରହିଥିଲା । ପାଣି ନ ଥିବାରୁ ଗୋଟିଏ ସୁଦ୍ଧା ମଶା ଦେଖିବାକୁ ମିଳୁ ନ ଥିଲେ । ମାଲେରିଆ ରୋଗ ମଧ୍ୟ ନ ଥିଲା । କିନ୍ତୁ କେତେକ ବର୍ଷ ତଳେ ଏ ଅଞ୍ଚଳରେ ବହୁତ କେନାଲ ଖୋଳାହୋଇ ଶୁଷ୍କ ମରୁଭୂମିକୁ ପାଣି ଯୋଗାଗଲା । ମନୁଷ୍ୟର ବୁଦ୍ଧି ଓ କୌଶଳରେ ଶୁଷ୍କ ମରୁପ୍ରାନ୍ତର ଶ୍ୟାମଳ ଶସ୍ୟ କ୍ଷେତ୍ରରେ ପରିଣତ ହେଲା । ପଞ୍ଜାବ ନିଜର ଖାଦ୍ୟ ପୂର୍ଣ୍ଣ ଭାବରେ ଯୋଗାଡ଼ କରି ବାହାରକୁ ଖାଦ୍ୟ ପଦାର୍ଥ ରପ୍ତାନି କଲା । କିନ୍ତୁ ଏହି ସଫଳତା ସଙ୍ଗେ ସଙ୍ଗେ କେନାଲ ଯୋଗେ ପାଣି ଏଣେତେଣେ ଜମିବାରୁ ମଶା ସଂଖ୍ୟା ବଢ଼ିଲା । ପଞ୍ଜାବ ଲୋକ-ଙ୍କର ଅଜଣା ମାଲେରିଆ ରୋଗ ତାଙ୍କ ପ୍ରଦେଶକୁ ଆକ୍ରମଣ କଲା । ଏହା ଛଡ଼ା ଆମର ଅସାବଧାନତା ଯୋଗୁଁ ହାଣ୍ଡି, ମାଟିଆ, ଗରା,

ଚୌବଚ୍ଚା ଓ ନଳାରେ ପାଣି ଜମି ରହେ । ଚୁଆଁ ହାଣ୍ଡି ଅଟିକା ଲୋକେ ବାହାରପଟେ ଓ ଗାଁ ମୁଣ୍ଡରେ ପକାଇ ଦେଇଥାନ୍ତି । ବର୍ଷାଦିନେ ସେଥିରେ ପାଣି ଜମେ । ଯେ କୌଣସି ଜାଗାରେ ପାଣି ଜମି ରହିଲେ, ସେଥିରେ ମଶା ଜନ୍ମ ଦେଇ ବଂଶ ବୃଦ୍ଧି କରାଏ । ଏପରିକି ବୈଠକଖାନା ଫୁଲଦାନୀର ପାଣି ପ୍ରତିଦିନ ନ ବଦଳାଇଲେ ସେଥିରେ ମଧ୍ୟ ମଶା ଜନ୍ମଦିଏ । ସମୟେ ସମୟେ ସେଥିରେ ମଧ୍ୟ ମଶାଛୁଆ ଦେଖାଯାଏ । ଯେ କୌଣସି କାରଣରୁ ପାଣି ଜମି ରହିଲେ ମଶା ବଂଶ ବୃଦ୍ଧି ପାନ୍ତି । ଫଳରେ ମ୍ୟାଲେରିଆ ରୋଗ ହୁଏ । ଏଥିଯୋଗୁଁ ମାଳ ଅଞ୍ଚଳରେ, ନଈକୂଳେ, ଜଳମାଳରେ, ସମୁଦ୍ରକୂଳିଆ ଜାଗାରେ, ଧାନ ଫସଲ ଅଞ୍ଚଳରେ, କେନାଲ ଦ୍ୱାରା ପାଣି ଯୋଗାଯାଉଥିବା ସ୍ଥାନମାନଙ୍କରେ ମ୍ୟାଲେରିଆ ରୋଗର ପ୍ରାଦୁର୍ଭାବ ଦେଖାଯାଏ । ଇଟା ଓ ଘର ତିଆରିପାଇଁ ମାଟି ଖୋଳାଯୋଗୁଁ ସହର ଆଖପାଖରେ ପାଣି ଜମି ରହିବାରୁ ସହରମାନଙ୍କରେ ମଧ୍ୟ ଏହିରୋଗ ହୋଇଥାଏ । କଟକ ହେଉଛି ଏହାର ଗୋଟିଏ ଉଦାହରଣ । ଏହାଛଡ଼ା ବାରକ-ମିସ୍ତ୍ରୀ ବିଭାଗ ( P.W.D. )ର କାର୍ଯ୍ୟକଳାପ ଯୋଗୁଁ ପାଣି ଏଣେ ତେଣେ ଜମି ରହିବାରୁ ମଶା ବଂଶ ବୃଦ୍ଧିପାଏ । ଆମଦେଶରେ ଦେଖାଯାଏ ସ୍ୱାଭାବିକ ଜଳପ୍ରବାହ ପଥରେ ବଡ଼ ବଡ଼ ରାସ୍ତା ଓ ରେଳରାସ୍ତା ପକା ହୋଇଥାଏ । ସ୍ୱାଭାବିକ ପ୍ରବାହପାଇଁ ଅଳ୍ପ କେତୋଟି ପୋଲ ଓ ଶଙ୍ଖର ବ୍ୟବସ୍ଥା ଥାଏ; ମାତ୍ର ବର୍ଷାପାଣି ନିକାଶ କରିବାପାଇଁ ଏଗୁଡ଼ିକ ଯଥେଷ୍ଟ ହୋଇ ନ ଥାଏ । ଫଳରେ ଉପର ପାଖରେ ପାଣି ଜମି ରହେ । ଅନେକ ସ୍ଥାନରେ ଦେଖାଯାଏ ଶଙ୍ଖଗୁଡ଼ିକ ଏପରି ସ୍ତରରେ ଅବସ୍ଥିତ ଯେ ଶଙ୍ଖର ଉପରପଟେ ପାଣି ବହୁଦିନ ପର୍ଯ୍ୟନ୍ତ ଜମି ରହିଥାଏ । ବର୍ଷାଦିନର ଜଳପ୍ରପାତ ଯୋଗୁଁ ଶଙ୍ଖର ତଳ ପାଖେ ବଡ଼ ବଡ଼ ଖାଲ ହୋଇଯାଇ ଖରାଦିନେ ମଧ୍ୟ ପାଣି ଜମି ରହିଥାଏ । ପୁଣି ବର୍ଷକୁ ବର୍ଷ ରାସ୍ତା ମରାମତିପାଇଁ ରାସ୍ତା କଡ଼ରୁ ମାଟି କଟାହୋଇ

ଥାଏ । ଏହିପରି ନୟୂନ ଜୋରରେ ମାଘମାସ ପର୍ଯ୍ୟନ୍ତ ପାଣି ଜମିଥିବାର ଦେଖାଯାଇ ଥାଏ । ପକାରାସ୍ତା, ରେଲରାସ୍ତା, ନାଳ ପ୍ରଭୃତିର ତିଆରି ଯୋଗୁଁ ଯାତାୟାତ, ବାଣିଜ୍ୟ ବ୍ୟବସାୟର ସୁବିଧା ବହୁତ ହୋଇଅଛି ସତ; କିନ୍ତୁ ଅଳ୍ପ ଖର୍ଚ୍ଚରେ କାମ ହାସଲ କରିବା ପ୍ରଧାନ ଉଦ୍ଦେଶ୍ୟ. ହୋଇଥିବାରୁ ଦୂରଦର୍ଶିତା ଅଭାବରୁ ଦେଶର ଆଶାନୁରୂପ ମଙ୍ଗଳ ହୋଇନାହିଁ ; ବରଂସ୍ଥାନେ ସ୍ଥାନେ ପାଣି ଜମି ରହିଥିବାରୁ କୃଷିନାଶ ଓ ମଶାବଂଶ ବୃଦ୍ଧି ଯୋଗୁଁ ମାଲେରିଆ ଓ ବାତଜ୍ୱରର ପ୍ରାଦୁର୍ଭାବ ବଢ଼ିଛି । ଫଳରେ ବହୁ ସୁଜଳା, ସୁଫଳା, ଶସ୍ୟଶ୍ୟାମଳା ଭୂଖଣ୍ଡ ଅନୁର୍ବର ଜଙ୍ଗଲ ଭୂମିରେ ପରିଣତ ହୋଇଛି । ବହୁ ସ୍ୱାସ୍ଥ୍ୟକର ସ୍ଥାନ ମାଲେରିଆ ଓ ବାତଜ୍ୱରଦ୍ୱାରା ଆକ୍ରାନ୍ତ ହୋଇ ଜନଶୂନ୍ୟ ହୋଇ ଆସୁଅଛି । ଆମ ଦେଶର ଆର୍ଥିକ, ସାମାଜିକ ଓ ସ୍ୱାସ୍ଥ୍ୟର ଏ ଶୋଚନୀୟ ଅବନତି ପାଇଁ ଆମ ଦେଶର ବାରିକ ମିସ୍ତ୍ରୀବିଭାଗ ଓ ଇଞ୍ଜିନିୟରମାନେ ବହୁ ପରିମାଣରେ ଦାୟୀ । ଏ କଥା ଚିନ୍ତାଶୀଳ ଡାକ୍ତର ଏବଂ ଇଞ୍ଜିନିୟରମାନେ ସ୍ୱୀକାର କରିଅଛନ୍ତି (**Vide 'Man made malaria' by Lt.Col.J.A. Shintion and Prof Rajaram**)

## ମଶା ନିବାରଣ

ପାଣି ମଶାବଂଶ ବୃଦ୍ଧିର ପ୍ରଧାନ କାରଣ ହୋଇଥିବାରୁ ମଶା ଯେପରି ପାଣିପାଖ ନ ପଶେ, ତାର ଉପାୟ ଠିକ୍ କରିବାକୁ ହେବ । ଲୋଡ଼ା ନ ଥିବା ସମସ୍ତ ଜଳାଶୟ ପୋତି ପକାଇବାକୁ ହେବ । ଗୋହିରି ଓ ନାଳ ଖୋଲି କୌଣସି ବଡ଼ ନଈ ବା ବଡ଼ ପୋଖରିକୁ ଜମା ହୋଇଥିବା ପାଣି ବାହାରି ଦେବ । ସୁବିଧାରେ ନାଳ ଖୋଲି ବଡ଼ ଦଲଦଲିଆ ବା ଜଙ୍ଗଲ (**Marsh**)ଭୂମିକୁ ନିଗାଡ଼ି ଦିଆଯାଇ ପାରେ । ସ୍ୱାଭାବିକ ଜଳସ୍ରୋତରେ ଯେପରି କୌଣସି

ପ୍ରକାର ବ୍ୟାଘାତ ନ ଆସେ, ସେଥିପ୍ରତି ଦୃଷ୍ଟିଦେବା । କୌଣସି ସ୍ଥାନରେ ଅଦରକାରୀ ଖାଲ ରଖିବ ନାହିଁ । ହାଣ୍ଡି ଅଟିକା ଫୋପାଡ଼ି ଦେବାକୁ ହେଲେ ଠିକ୍ ଠିକ୍ କରି ଭାଙ୍ଗିଦେବ । ଅଭଙ୍ଗା ଟିଣ ବା ଲୁହା ପାତ୍ର ସବୁ ଉଗ୍ଗୁଡ଼େଇ ଦେବ ବା ପୋତିଦେବ, ଘରେ କୌଣସି ପାତ୍ରରେ ପାଣି ଜମାଇ ରଖିବ ନାହିଁ, ରଖିଲେ ଘୋଡ଼ାଇ ରଖିବ, କୂଅର ମୁହଁକୁ ମଧ୍ୟ ଘୋଡ଼ାଇ ରଖିବ, ଯେପରି ମଶା ତା ଭିତରକୁ ଯାଇ ନ ପାରେ । ପୋଖରୀ, ଗଡ଼ିଆ, ଚୂଆ ଓ ଅନ୍ୟାନ୍ୟ ଜଳାଶୟମାନଙ୍କରେ ଛୋଟ ମାଛ ଯାଆଁଳ ଗୁଡ଼ି ମାଛ ପୋଷିଲେ ଭାରି ଭଲ । କାରଣ ମଶାଡିମ୍ବ, ସଁବାଳୁଆ ପୋକ ଇତ୍ୟାଦିଙ୍କୁ ସେମାନେ ଧୋଇ ମାଛ ଖାଇଯାନ୍ତି । ମ୍ୟାଲେରିଆ ଓ ବାତଜ୍ୱରରୁ ରକ୍ଷା ମିଳେ । ଏହା ସଙ୍ଗେ ସଙ୍ଗେ ଆଠକାଳ ବାରମାସି ମାଛଖିଆ ଉତ୍କୃଷ୍ଟ ଉପାଦେୟ ଖାଦ୍ୟ ମଧ୍ୟ ମିଳେ । ଲୋକ ସାଧାରଣଙ୍କର ସ୍ୱାସ୍ଥ୍ୟ ଉନ୍ନତି ସକାଶେ ସରକାରଙ୍କର ଗୋଟିଏ ମାଛପୋଷା ବିଭାଗ ଅଛି । ଏହା ବର୍ତ୍ତମାନ ସରକାରଙ୍କ କୃଷିବିଭାଗ ସଙ୍ଗେ ସଂଯୁକ୍ତ । ବର୍ଷା ଆରମ୍ଭରେ ସରକାରୀ ଲୋକେ ଯାଆଁଳ ବାଣ୍ଟନ୍ତି । ସ୍ଥାନେ ସ୍ଥାନେ ଥିବା ସରକାରୀ କୃଷି ଫାର୍ମରୁ ଖୋଜିଲେ ମାଛ ଯାଆଁଳ ମିଳିବ । ପୋଖରୀ କୂଳରେ ପାଣି ଦଳ, ବୋରଝାଙ୍କି ଓ ଘାସ ପ୍ରଭୃତି ବହୁତ ଅଦରକାରୀ ଗଛ ଉଠିଥାଏ । ପୋଖରୀକୁ ଏହା ଖରାପ କରିଦିଏ । ମଶାଛୁଆ ଏଥିରେ ଲୁଚିରହେ, ମାଛ ତାକୁ ଖାଇପାରେ ନାହିଁ; ସେଥିପାଇଁ ପୋଖରୀରେ କୌଣସି ପ୍ରକାର ଦଳ ରଖାଇ ଦେବନାହିଁ । କୂଳକୁ ଥରକୁଥର ହାଣି ଓ ଖୁଣ୍ଟି ପରିଷ୍କାର କରିଦେବ, ତାହାହେଲେ ମାଛଙ୍କ ଦାଉରେ ମଶାଙ୍କ ପିଲାକବିଲା ଆଉ ତିଷ୍ଠିପାରିବେ ନାହିଁ । ବଡ଼ ବଡ଼ ଦରୁଆ ପୋଖରୀ, ପାଟ, ଜଙ୍ଗଲ ସ୍ଥାନ ଓ ଧାନବିଲ ପାଣିରେ ମଶାବଂଶ ବେଶୀ ବୃଦ୍ଧି ହୁଏ । ସେଥିରୁ ପାଣି ଶୁଖାଇ ଦେଇ ହେବ ନାହିଁ କି ପରିଷ୍କାର କରି

ହେବ ନାହିଁ । ସେଠାରେ ମଶାଛୁଆ ମାରିବାପାଇଁ ଅନ୍ୟ ଉପାୟ ଅଛି । ପାଣି ଉପରେ କୌଣସି ପ୍ରକାର ତେଲ ଅଜାଡ଼ିଦେଲେ ତେଲ ଗୁଡ଼ିଆଡ଼େ ଖେଳେଇ ହୋଇଯାଏ ଓ ଗୋଟିଏ ସୂକ୍ଷ୍ମ ତେଲ ସ୍ତର ପାଣି ଉପରେ ଛାଇ ହୋଇଯାଏ । ସୂକ୍ଷ୍ମସ୍ତର ତଳେ ଥିବା ମଶାଛୁଆପରି ସମସ୍ତ ପୋକ ମରିଯାନ୍ତି । କଟକ ଓ ପୁରୀ ସହର ଏବଂ କେତେକ ମାଳ ଅଞ୍ଚଳ ସହରର ନଳା ସନ୍ତସନ୍ତିଆ ଜାଗା ଓ ପାଣି ଜମି ରହୁଥିବା ଜାଗାରେ ସ୍ପ୍ରେ ଯନ୍ତ୍ର ସାହାଯ୍ୟ ନେଇ ଏକପ୍ରକାର ତେଲ ମ୍ୟାଲେରିଓଲ୍ ବା **Malariol** ପମ୍ପକରି ଗୁଡ଼ିଆଡ଼େ ବିଛେଇ ଦିଆଯାଏ । ସେଠାରେ ଥିବା ମଶାର ପିଲକଞ୍ଚିଲ ସବୁ ମରିଯାନ୍ତି । ପାରିସଗ୍ରିନ୍ **(Paris Green)** ବୋଲି ଶାଗୁଆ ରଙ୍ଗର ଏକପ୍ରକାର ବିଷଗୁଣ୍ଡ ପାଣି ଉପରେ ବିଛେଇ ଦେଲେ ମଶାର ସଁବାଳୁଆ ପୋକମାନେ ମରିଯାନ୍ତି । କେତେକ ଦେଶରେ ଉଡ଼ାଜାହାଜ ସାହାଯ୍ୟରେ ଉପରକୁ ଉଠି ଏହି ପାରିସଗ୍ରିନ୍ ଗୁଣ୍ଡର ବୋମା ମଶା ବଢୁଥିବା ଜାଗାମାନଙ୍କରେ ପକାନ୍ତି । ବୋମା ଆକାଶରେ ଥାଇ ଫାଟିଯାଏ । ପାରିସଗ୍ରିନ୍ ଗୁଣ୍ଡ ବିଛାଇ ହୋଇ ଧୀରେ ଧୀରେ ଆସି ପାଣିରେ ପଡ଼େ । ସୁବିସ୍ତୀର୍ଣ୍ଣ ଦଳୁଆପାଟ ଏବଂ ଜଙ୍ଗଲ ମାଳମାନଙ୍କରେ ବିଷଗୁଣ୍ଡ ବୋମା ପକାଇ ମଶାକୁ ସବଂଶେ ମରାଯାଏ ।

ଇଟାଲି ଦେଶରେ ପନସ୍ ବୋଲି ଗୋଟିଏ ସ୍ଥାନ ଅଛି । ଏହି ସ୍ଥାନଟି ଇତିହାସରେ ସୁବିଖ୍ୟାତ, ଖୁବ୍ ଭଲସ୍ଥାନ ବୋଲି ନୁହେଁ, ଅତି ଭୟାନକ ଜଙ୍ଗଲ ପ୍ରାନ୍ତର ବୋଲି । କେତେ ବଡ଼ ବଡ଼ ସୈନ୍ୟସାମନ୍ତ, କେତେ କେତେ ବୀର ପୁରୁଷ ଏଥିରେ ପଡ଼ି ମରି ସରି ଯାଇଛନ୍ତି । ପାଣି ବୋହିଯିବାର ଉପାୟ ନ ଥିବାରୁ ଏହି ସ୍ଥାନରେ ଅଳ୍ପ ଅଳ୍ପ ପାଣି ସବୁବେଳେ ଜମା ହୋଇ ରହିଥାଏ । ଗଭୀର ପଙ୍କ ଜମି ରହିଥିବାରୁ ମଣିଷ ସେ ଜାଗା ଭିତରକୁ ଯାଇ ପାରେ ନାହିଁ ।

ଏ ଅଞ୍ଚଳରେ ମଶାମାନଙ୍କ ପ୍ରାଦୁର୍ଭାବ ଖୁବ୍ ବେଶୀ । ଆଖ ପାଖ ଲୋକେ ମ୍ୟାଲେରିଆ ଜର୍ଜ୍ଜରିତ । ବହୁ ଯୁଗଯୁଗାନ୍ତରରୁ ଏହି ସୁବିସ୍ତୀର୍ଣ୍ଣ ପ୍ରାନ୍ତର ନିରର୍ଥକ ହୋଇ ପଡ଼ି ରହିଥିଲା ଏବଂ ଆଖ ପାଖ ଲୋକଙ୍କର ମାଲେରିଆ ରୋଗ ବଢ଼ାଉଥିଲା । ଏବେ କେତେ ବର୍ଷ ହେଲା ମଣିଷର ବୁଦ୍ଧି, ବିଚକ୍ଷଣତା ଓ ଯାନ୍ତ୍ରିକ ବଳ ସାହାଯ୍ୟରେ ନାଳ ଖୋଳା ହୋଇ ଏହି ପଙ୍କମୟ ପଣ୍ଟ୍ସ୍ ପ୍ରାନ୍ତରକୁ ଜଳଶୂନ୍ୟ କରାଗଲା । (ଏହାକୁ ପଣ୍ଟାଇନ୍ ମାର୍ସ କହନ୍ତି ।) ଆକାଶରୁ ଉଡ଼ାଜାହାଜ ଓ ବୋମା ସାହା-ଯ୍ୟରେ ମଶା ବଂଶ ଉପରେ ଆକ୍ରମଣ କରାଗଲା । ପ୍ରାନ୍ତରଟି ଭୀଷଣ ମାଲେରିଆ ରୋଗରୁ ମୁକ୍ତ ହେଲା । ପାଣି ନିଗିଡ଼ି ଯିବାରୁ ପଙ୍କ ଶୁଖି ଟାଣ ହୋଇଗଲା । ଫଳରେ ଅଧିକ ଲୋକେ ସେଠାରେ ଘରଦ୍ୱାର କଲେ ଏବଂ ଜମିବାଡ଼ି କରି ଭଲ ଶସ୍ୟ ଉପୁଜାଇଲେ । କିଛିଦିନ ପୂର୍ବରୁ ଯାହା ମାଲେରିଆ ଜର୍ଜ୍ଜରିତ ପଙ୍କମୟ ଜଙ୍ଗଲ ପ୍ରାନ୍ତର ଥିଲା ତାହା ଏବେ ସମୃଦ୍ଧିଶାଳୀ ଉପନିବେଶରେ ପରିଣତ ହୋଇଅଛି । ଆମଦେଶ କୃଷି ପ୍ରଧାନ ଦେଶ । ବିଶେଷତଃ ଆମ ଓଡ଼ିଶା ପ୍ରଦେଶରେ ଧାନ ଫସଲ ବେଶୀ । ଧାନ ଫସଲ ପ୍ରାୟ ଚାରିମାସ ବୁଡ଼ାପାଣି ଦରକାର କରେ । କିନ୍ତୁ ଏହି ଧାନ ଜମିରେ ଜମି ରହିବା ପାଣିରେ ମଶାବଂଶ ବୃଦ୍ଧି ପାଏ । ଏହାକୁ ସଫା କରି ହେବ ନାହିଁ । ପାରିସ୍ଗ୍ରୀନ୍ ବିଛେଇଲେ ଫସଲ ନଷ୍ଟ ହେବାର ଆଶଙ୍କା ଥାଏ । ଏପରି ଅବସ୍ଥାରେ ମଧ୍ୟ ମଶାବଂଶ ନାଶର ଉପାୟ ଅଛି । ଅନ୍ତତଃ ସପ୍ତାହକୁ ଥରେ ପ୍ରତ୍ୟେକ କିଆରିର ପାଣି ନିଗାଡ଼ି ଦେଇ ଦିନେ ଦୁଇଦିନ ଶୁଖାଇ ରଖି ପୁଣି ପାଣି ଭର୍ତ୍ତି କରି-ଦେଲେ ମଶାବଂଶ ବଢ଼ିପାରେ ନାହିଁ । ଅଥଚ ଧାନ ଫସଲ ନଷ୍ଟ ହୁଏ ନାହିଁ । କିନ୍ତୁ ଏଥିପାଇଁ ଅବଶ୍ୟକତା ଅନୁସାରେ ପାଣି ଯୋଗାଇ ବାର ବନ୍ଦୋବସ୍ତ ଥିବା ଦରକାର ।

# ୩ । ମାଲେରିଆ ଜୀବାଣୁ

ମାଲେରିଆ ରୋଗ ଓ ତାର ପ୍ରସାରର କାରଣ ହେଉଛି, ମ୍ୟାଲେରିଆ ଜୀବାଣୁ । ମାଲେରିଆ ଜୀବାଣୁକୁ ନାଶ କରିବା ହେଉଛି ପ୍ରତିଷେଧ ଓ ଚିକିତ୍ସାର ଚରମ ଉଦ୍ଦେଶ୍ୟ । ମଣିଷକୁ ମଶାଠାରୁ ଓ ମାଲେରିଆ ଜୀବାଣୁଠାରୁ ରକ୍ଷା କରିବା, ମଶା ନିବାରଣ କରିବା କଷ୍ଟ କିନ୍ତୁ ମାଲେରିଆ ଜୀବାଣୁକୁ ନାଶ କରିବା ଅପେକ୍ଷାକୃତ ସହଜ । ମାଲେରିଆର ମୌଳିକ କାରଣ ହେଉଛି ମାଲେରିଆ ଜୀବାଣୁ । ଏହି ଜୀବାଣୁ ବିଷୟରେ ବର୍ତ୍ତମାନ ପଦେ ଅଧେ ବିସ୍ତୃତ କରାଯାଉ ।

**ଇତିବୃତ୍ତ**—ମାଲେରିଆ ଜୀବାଣୁ ଅତି କ୍ଷୁଦ୍ର ଜୀବ । ଅଣୁବୀକ୍ଷଣ ଯନ୍ତ୍ର ସାହାଯ୍ୟରେ କେବଳ ଦେଖାଯାଏ । ଏହାର ଜୀବନ ଇତିହାସ (Life history)ରେ ବହୁତ ରୂପାନ୍ତର ଘଟିଥାଏ । ମନୁଷ୍ୟ ଓ ମଶା ଦେହ ହେଉଛି ଏହାର ବିକାଶ ଓ ପ୍ରସାରର ଅଧିଷ୍ଠାନ । ଉଭୟଙ୍କ ଦେହ ଉପରେ ମାଲେରିଆ ଜୀବାଣୁର ଜୀବନ ଇତିହାସ ବିସ୍ତୃତ । ମନୁଷ୍ୟ ରକ୍ତର ଲୋହିତ କଣାରେ ଜୀବାଣୁ ଏକ ଅବସ୍ଥାରେ ଥାଏ । ଅନ୍ୟ ଅବସ୍ଥାରେ ମଶାର ପାକସ୍ଥଳୀର ପର୍ଦ୍ଦାରେ ଅଧିଷ୍ଠିତ ହୋଇ ଅମିତ ଭାବରେ ନିଜର ସଂଖ୍ୟା ବୃଦ୍ଧି କରେ । ଶେଷରେ ଜୀବାଣୁଗୁଡ଼ିକ ମଶାର ଲାଳ ଗ୍ରନ୍ଥିରେ ଜମା ହୁଅନ୍ତି । ଏହାପରେ ଆକ୍ରାନ୍ତ ମଶା ମଣିଷକୁ କାମୁଡିଲେ ମଣିଷ ଦେହରେ ମାଲେରିଆ ଜୀବାଣୁ ପଶନ୍ତି । ରକ୍ତର ଲୋହିତ କଣାରେ ସଂଖ୍ୟା ବୃଦ୍ଧି କରନ୍ତି । ବହୁ ପରିମାଣରେ ଲୋହିତ କଣାଗୁଡ଼ିକ ଆକ୍ରାନ୍ତ ହେଲେ ମନୁଷ୍ୟକୁ ମାଲେରିଆ ରୋଗ ଧରେ । ଏହିପରି ଆକ୍ରାନ୍ତ ମନୁଷ୍ୟକୁ ମଶା କାମୁଡିଲେ ରକ୍ତ ସଙ୍ଗେ ଜୀବାଣୁ ମଶା ପେଟକୁ ଶୋଷି ହୋଇଯାଏ । ଏହିପରି ମଶାଠାରୁ ମନୁଷ୍ୟ ଓ ମନୁଷ୍ୟଠାରୁ ମଶା ଉପରକୁ ଡେଇଁ ଘୂରି ଘୂରି ନିଜର ବଂଶ ବୃଦ୍ଧିକରି ଚାଲିଥାଏ ।

# ମାଲେରିଆ ରୋଗର ଘରୋଇ ଚିକିତ୍ସା

ଭାଗବତ କଥାରେ କହିଲେ—

"ମୂଳ ମାଇଲେ ଯିବ ସର
ଦେବଙ୍କ ସଙ୍ଗେ କ୍ଷମା କର"

ଏହି ମୂଳ କାରଣ ମାଲେରିଆ ଜୀବାଣୁକୁ ଅନ୍ତର କରିପାରିଲେ ଅନ୍ୟ କୌଣସି ଉପାୟ ଲୋଡ଼ା ହେବ ନାହିଁ । ମାଲେରିଆ ଜୀବାଣୁ ନାଶର ଉପାୟ ସହଜ; ସୁପ୍ରସିଦ୍ଧ ଓ ଅନିବାର୍ଯ୍ୟ ଉପାୟ ହେଉଛି, ମାଲେରିଆ ଜୀବାଣୁନାଶକ ଔଷଧର ଯଥାଯଥ ବ୍ୟବହାର ବା ମାଲେରିଆ ରୋଗର ଯଥାଯଥ ଚିକିତ୍ସା । ଏପର୍ଯ୍ୟନ୍ତ ଏହି ଉଦ୍ଦେଶ୍ୟରେ ତିନି ପ୍ରକାର ଔଷଧର ବ୍ୟବହାର ଅଛି ।

(୧) ସିଙ୍କୋନା ଗଛର ବକଲାଗୁଣ୍ଡ ଓ ସେଥିରୁ ତିଆରି କ୍ୱିନାଇନ ପ୍ରଭୃତି ଔଷଧ ।

(୨) ରାସାୟନିକ ପ୍ରକ୍ରିୟାରେ ତିଆରି "ପ୍ଲାସ୍-ମୋଚନ୍ ଓ ପାମାକ୍ୱିନ୍ ।

(୩) ରାସାୟନିକ ରଙ୍ଗ ବିଶେଷ "ଆଟେବ୍ରିନ୍" ଓ କ୍ୱିନାକ୍ରିନ୍ ।

ଏହି ତିନିଗୋଟି ଔଷଧ ମଧ୍ୟରୁ ସିଙ୍କୋନାଗଛର ବକଲାଗୁଣ୍ଡ ଓ ସେଥିରୁ ତିଆରି ସୁପ୍ରସିଦ୍ଧ କ୍ୱିନାଇନ ଓ ଟୋଟାକ୍ୱିନା ମାଲେରିଆର ଅମୋଘ ମହୌଷଧ । ଏହି ସିଙ୍କୋନା ଗଛର ଚମତ୍କାର ଇତିହାସ ଅଛି । ସ୍ପେନ୍ ଦେଶୀୟ ଔପନିବେଶିକମାନେ ଦକ୍ଷିଣ ଆମେରିକାରେ ଉପନିବେଶ ସ୍ଥାପନ କଲାବେଳେ ଦେଖିଲେ ପାଳିଜ୍ୱର ଜର୍ଜରିତ ସେଠାର ଆଦିମ ଅଧିବାସୀମାନେ ଏକପ୍ରକାର ଗଛର ବକଲା ଗୁଣ୍ଡ ଖାଇ ପାଳିଜ୍ୱରରୁ ଭଲ ହୋଇ ଯାଉଛନ୍ତି । ସ୍ପେନ୍‌ଦେଶର

ଜଣେ ଜମିଦାର କାଉଣ୍ଟ ଅଫ ସିଙ୍କୋନା (Count of Cinchona) ଏହି ବିଷୟରେ ବିଶେଷ ଗବେଷଣା କରି ସେହି ଗଛଟିକୁ ତାଙ୍କ ଦେଶକୁ ଆଣିଥିଲେ । ତାଙ୍କରି ନାମ ଅନୁସାରେ ଏହି ଗଛଟି ସିଙ୍କୋନା ଗଛ ବୋଲି ପରିଚିତ ହେଲା । ଏହାର ମହାତ୍ମ୍ୟ ଇଉରୋପ ଓ ଇଉରୋପୀୟ ଅଧିକୃତ ଦେଶମାନଙ୍କରେ ବଢ଼ିବାକୁ ଲାଗିଲା ଏବଂ ଅନେକ ସ୍ଥାନରେ ଏହି ଗଛ ଲଗାହେଲା । ଏହି ଗଛର ବକଳ ଦ୍ୱାରା ଲୋକେ ପାଲଜରରୁ ରକ୍ଷା ପାଇଲେ । ବୈଜ୍ଞାନିକ ବିଶ୍ଳେଷଣ ପ୍ରକ୍ରିୟାର କ୍ରମ ଉନ୍ନତି ସଙ୍ଗେ ସଙ୍ଗେ ସିଙ୍କୋନା ଗଛର ବକଳା ଗୁଣ୍ଡରୁ କେତେକ ଅଲ୍‌କାଲଏଡ୍ (Alkaloid) ଜାତୀୟ ରାସାୟନିକ ପଦାର୍ଥ ଆବିଷ୍କୃତ ହେଲା । ସେଥିମଧ୍ୟରୁ କ୍ୱିନାଇନ୍ ହେଉଛି ସର୍ବପ୍ରଧାନ । ଏବେ ଅନ୍ତର୍ଜାତୀୟ ସଂଘର ମ୍ୟାଲେରିଆ ଅନୁଷ୍ଠାନର (Malaria Commission of the League of Nations) ଆନୁକୂଲ୍ୟରେ ସିଙ୍କୋନା ବକଳାର ସମସ୍ତ ରାସାୟନିକ ପଦାର୍ଥକୁ ସଂଗ୍ରହ କରି ମ୍ୟାଲେରିଆ ରୋଗ ଚିକିତ୍ସାରେ ବ୍ୟବହାର କରାଇଛନ୍ତି । ଏହା ସହଜରେ ହୋଇ ପାରୁଛି ଏବଂ ଏଥିରେ ଖୁବ୍ କମ୍ ଖର୍ଚ୍ଚ ହେଉଛି । ଏହାର ନାମ ହେଉଛି ଟୋଟାକ୍ୱିନା (Totaquina)

ଆମ ଭାରତବର୍ଷରେ ମଧ୍ୟ ଏହି ସିଙ୍କୋନା ଗଛର ଚାଷ ହେଲାଣି । ସରକାରଙ୍କର ତତ୍ତ୍ୱାବଧାନରେ ଉପହିମାଳୟ ପ୍ରାନ୍ତରରେ ଓ ନୀଳଗିରି ଅଞ୍ଚଳରେ ବହୁତ ସିଙ୍କୋନା ଗଛ ଲଗାହେଉଛି । ସରକାରଙ୍କ କାରଖାନାରେ କ୍ୱିନାଇନ୍ ଓ ଟୋଟାକ୍ୱିନା ପ୍ରସ୍ତୁତ ହେଉଛି । କିନ୍ତୁ ଆମଦେଶରେ ମ୍ୟାଲେରିଆର ପ୍ରାଦୁର୍ଭାବ ଓ ଦରକାର ପରିମାଣ ଅନୁପାତରେ ଏପର୍ଯ୍ୟନ୍ତ ଯଥେଷ୍ଟ କ୍ୱିନାଇନ୍ ଓ ଟୋଟାକ୍ୱିନା ତିଆରି ହୋଇନାହିଁ । ଏବେ ସୁଦ୍ଧା ଆମେ ଅନ୍ୟ ଦେଶ ଉପରେ ଏଥିପାଇଁ ନିର୍ଭର କରୁଥାଇଁ । ବଡ଼ ସୁଖର ବିଷୟ ଯେ ସିଙ୍କୋନା ଚାଷ ବହୁ

ପରିମାଣରେ ବଢ଼ାଇବାପାଇଁ ବ୍ୟବସ୍ଥା କରାହେଉଛି । ଆମ ଓଡ଼ିଶା ପ୍ରଦେଶରେ ଗଞ୍ଜାମ ଓ କୋରାପୁଟ ମାଳଅଞ୍ଚଳରେ ସିଙ୍କୋନା ବୃକ୍ଷ ଯୋଗାଡ଼ କରିବାପାଇଁ ପ୍ରସ୍ତାବ ମଧ୍ୟ ହୋଇଛି । ଏହା ଶୀଘ୍ର କାର୍ଯ୍ୟରେ ପରିଣତ ହୋଇପାରିଲେ ଦେଶର ମଙ୍ଗଳ ହେବ । କ୍ୱିନାଇନ୍ ଓ ସିଙ୍କୋନା ବକଳା ଗୁଣ୍ଡ ଛଡ଼ା ରାସାୟନିକ ପ୍ରକ୍ରିୟା ଦ୍ୱାରା ପ୍ରସ୍ତୁତ ହୋଇଥିବା ପ୍ଲାସ୍‌ମୋଚିନ୍ **(Plasmochin)** ଓ ଅଟେବ୍ରିନ୍ **(Atebrin)** ମଧ୍ୟ ମାଲେରିଆ ଚିକିତ୍ସାରେ ବ୍ୟବହାର କରାଯାଏ । ପ୍ଲାସ୍‌ମୋଚିନ୍ ବଡ଼ ଉତ୍କଟ ଥିବାରୁ ଓ ସମୟ ସମୟରେ ଭୟାନକ କୁଫଳ ଦେଉଥିବାରୁ ତାହା ଅଢ଼ି ବେଶୀ ବ୍ୟବହୃତ ହେଉ ନାହିଁ । କେତେକ ସ୍ଥାନରେ କ୍ୱିନାଇନ୍ ବା ସେ ଜାତୀୟ ଔଷଧ ଦ୍ୱାରା ମାଲେରିଆ ଭଲ ନ ହେଲେ ଅଟେବ୍ରିନ୍ ବା କ୍ୱିନାକ୍ରିନ୍ ପ୍ରୟୋଗ କରା ହୋଇଥାଏ । ସେଥିରେ ସୁଫଳ ମିଳେ । ଏହା କ୍ୱିନାଇନ୍ ପରି ପୀଡ଼ାପ୍ରଦ ନୁହେଁ ଓ ଅଳ୍ପ ଚିକିତ୍ସାରେ ମାଲେରିଆ ଭଲ ହୁଏ । ବର୍ତ୍ତମାନ ଯୁଦ୍ଧ ଯୋଗୁଁ ଅଟେବ୍ରିନ୍ ଅଢ଼ି ବେଶୀ ପରିମାଣରେ ମିଳୁ ନାହିଁ । କ୍ୱିନାଇନ ଓ ଟୋଟାକ୍ୱିନା ସଂଖ୍ୟାଧିକ ସ୍ଥାନରେ ମାଲେରିଆ ଜୀବାଣୁ ସମ୍ପୂର୍ଣ୍ଣରୂପେ ନାଶ କରିବାକୁ ସମର୍ଥ ହେଉଥିବାରୁ ଅଟେବ୍ରିନ୍‌ର ଅଭାବ ଅନୁଭବ କରି ହେଉ ନାହିଁ । ମାଲେରିଆ ରୋଗର ଚିକିତ୍ସାରେ ଏହି ସବୁ ଅମୋଘ ମହୌଷଧଗୁଡ଼ିକର ଅପବ୍ୟବହାର ଯଥେଷ୍ଟ ହୋଇଥାଏ । ଫଳରେ ଅନେକ ସ୍ଥାନରେ ସୁଫଳ ନ ମିଳି କୁଫଳ ମିଳିଥାଏ । ବିଧିମତେ ବ୍ୟବହାର ନ କଲେ ରୋଗୀ ରୋଗମୁକ୍ତ ହୁଏ ନାହିଁ । ବେଶୀକାଳ ପର୍ଯ୍ୟନ୍ତ ଅଳ୍ପ ପରିମାଣରେ ଖାଇଲେ ଜୀବାଣୁର ଔଷଧ ପ୍ରତିରୋଧ ଶକ୍ତି ବଢ଼ିଯାଏ, ଯେତେ ଔଷଧ ପ୍ରୟୋଗ କଲେ ମଧ୍ୟ କାଟି ଇରେ ନାହିଁ । ରୋଗରେ ଯଥାରୀତି ଘରୋଇ ଚିକିତ୍ସା ଓ ଔଷଧର ଉପଯୁକ୍ତ ବ୍ୟବହାରର ଅଭ୍ୟାସ ଚଳିଲେ ଦୂରଅଗଲା ।

ଜ୍ୱର ଅବସ୍ଥାରେ କ୍ୱିନାଇନ୍ ବା ଅନ୍ୟ କୌଣସି ଔଷଧ ଖାଇବା ଉଚିତ ନୁହେଁ । ଦୁଇ ତିନିପାଳି ପର୍ଯ୍ୟନ୍ତ ଅପେକ୍ଷା କରିବା ଉଚିତ । ଜ୍ୱର ଛାଡ଼ିଗଲେ ଠିକ୍ ଯାଇଁ ପରେ ଔଷଧ ଖାଇଲେ ଭଲ ଫଳ ମିଳେ । ଔଷଧ ଖାଇବା ପୂର୍ବରୁ ବାର୍ଲି, ସାଗୁ, ଫୁଟିଆଣି ପାଣି ଖାଇବ । ଲେମ୍ବୁରସ ସରବତ କରି ଯଥେଷ୍ଟ ପରିମାଣରେ ପିଇବ । କୋଷ୍ଠବଦ୍ଧ ଥିଲେ ତ୍ରିଫଳା (ଅଁଳା, ହରିଡ଼ା ଓ ବାହାଡ଼ା) ପାଣି, ସୁନାମୁଖିକୁ ପାଣିରେ ସିଝାଇ ସେ ପାଣି ବା ଜଡ଼ାତେଲ ଖାଇ ଝାଡ଼ା ପରିଷ୍କାର କରାଇବ । ଯେତେଦୂର ସମ୍ଭବ ବିଶ୍ରାମ ନେବ । ଏହା ହେଉଛି ମାଲେରିଆ ରୋଗର ପ୍ରାରମ୍ଭିକ ଚିକିତ୍ସା । ରୋଗର ପ୍ରଥମ ଅବସ୍ଥାରେ ଖୁବ୍ କମ୍ପ ଓ ଶୀତ ହୁଏ । ରୋଗୀ ଓ ତାର ପାଖ ଲୋକେ ସମସ୍ତେ ଭୀତ ହୋଇ ପଡ଼ନ୍ତି । କିନ୍ତୁ ଧୈର୍ଯ୍ୟ ରଖି ଯେତେଦୂର ସମ୍ଭବ ରୋଗୀକୁ ଘୋଡ଼ାଇ ରଖିବ । ଲୋମରେ ତିଆରି ପଶମ ବ୍ୟବହାର କରିବ ନାହିଁ । କପାସୂତାର ମୋଟା, ଖଦର ଓ ପତଳା ରେଜେଇ ଘୋଡ଼ାଇ ଦେବ । ବ୍ୟସ୍ତ ହେବା ଦରକାର ନାହିଁ । ଏହି ଅବସ୍ଥା ଆପେ ଆପେ ଭଲ ହୋଇଯାଏ । ଜ୍ୱରର ଦ୍ୱିତୀୟ ଅବସ୍ଥାରେ ରୋଗୀର ତାତ ଖୁବ୍ ବେଶୀ ବଢ଼ିଯାଏ । ତାପମାପକ ଯନ୍ତ୍ର (Thermometer) ସାହାଯ୍ୟରେ ଦେଖିଲେ ୧୦୪°—୧୦୭° ପର୍ଯ୍ୟନ୍ତ ତାପ ଉଠିବାର ଦେଖାଯାଇଥାଏ । ତାପ ହେଉଛି ଦେହର ପ୍ରତିରୋଧ ଶକ୍ତିର ମାପକାଠି; କିନ୍ତୁ ଅତି ବେଶୀ ତାପ ଦ୍ୱାରା ରୋଗୀର କଷ୍ଟ ବଢ଼ିଯାଏ ଓ ମସ୍ତିଷ୍କ ଓ ଅନ୍ୟାନ୍ୟ ସୂକ୍ଷ୍ମ ଯନ୍ତ୍ରପାତିର କ୍ଷତି ଘଟିପାରେ । ସେଥିପାଇଁ ୧୦୩°ରୁ ବେଶୀ ତାପ ହେଲେ ସାବଧାନ ହେବାକୁ ପଡ଼େ । ୧୦୩°ରୁ ତାପ ବଢ଼ିବା ସଙ୍ଗେ ସଙ୍ଗେ ତାତକୁ ଊଣା କରିବାପାଇଁ ପ୍ରବଳ ଚେଷ୍ଟା କରିବାକୁ ହେବ । ଜଳଚିକିତ୍ସା (Hydro-therapy ବା Hydro-

pathy) ହେଉଛି ଏହି ଅବସ୍ଥାର ପ୍ରଧାନ ଉପାୟ । ଜଳ ଚିକିତ୍ସାରେ କୌଣସି ଆଶଙ୍କା ନାହିଁ । ଥଣ୍ଡା ଧରିପକାଇବା ଓ ସନ୍ନିପାତ ହୋଇଯିବାର ଭୟ ନାହିଁ । ପ୍ରଥମେ ମୁଣ୍ଡକୁ ଥଣ୍ଡା ପାଣିରେ ଧୋଇଦେଇ କପାଳ ଉପରେ ପାଣିପଟି ପକାଇବ । ଥରକୁଥର ଟୋପିଏ ଟୋପିଏ ପାଣି ପକାଉଥିବ । ମୁଣ୍ଡ ଉପରେ ଆସ୍ତେ ଆସ୍ତେ ପଙ୍ଖା କରୁଥିବ । ଏତିକରେ ତାପର ଉଗ୍ରତା ଊଣା ହୋଇପାରେ । ଆଉ ବେଶୀ ତାପ ନ ହେବାର ସମ୍ଭାବନା; କିନ୍ତୁ କେତେକ କ୍ଷେତ୍ରରେ ଏହି ମାମୁଲି ଥଣ୍ଡାକୁ ନ ମାନି ତାତ ବଢ଼ିଗଲେ । ଏପରି ଅବସ୍ଥାରେ ଦେହତମାମ ଓଦା ଗାମୁଛା ବା ତଉଲିଆରେ ପୋଛିଦେଇ ମୁଣ୍ଡକୁ ଆଉ ଥରେ ଧୋଇଦେବ । ଖୁବ୍ ଥଣ୍ଡାପାଣି ରୋଗୀକୁ ପିଆଉଥିବ । ଏଥିରେ ମଧ୍ୟ ଜ୍ୱର ନ ଓହ୍ଲାଇଲେ ଓ ତାତ



ତାପ କମାଇବା ପାଇଁ ମୁଣ୍ଡଧୁଆ

୧୦୫° ହୋଇଗଲେ ମୁଣ୍ଡରେ ବରଫ ଥଳି ଦେବ । ବରଫ ନ ମିଳିଲେ ମୁଣ୍ଡକୁ କ୍ରମାଗତ ୧୫ ମିନିଟ ପର୍ଯ୍ୟନ୍ତ ଥଣ୍ଡା ପାଣିରେ

ଧୋଉଥିବ । ରୋଗୀକୁ ମୁହଁମାଡ଼ି ଶୁଆଇ ମୁଣ୍ଡକୁ ଖଟ ବାହାରକୁ ଟିକିଏ ବାହାର କରି ମୁଣ୍ଡତଳେ ଗୋଟିଏ ବାଲ୍‌ଟି ବା ବେସିନ୍ ରଖିବ । ବେକ ସ୍ତ୍ରୀରପାଖେ ଶୁଖିଲା ଗାମୁଛା ଗୁଡ଼ାଇ ଥଣ୍ଡା ଜଳପଟିରେ ମୁଣ୍ଡ, ମୁହଁ, ବେକ ଉପରେ ଘଷୁଥିବ । କାନପୁଡ଼ାରେ ଟିକିଏ ତୁଳା ଦେଇଦେଲେ କାନ ଭିତରେ ପାଣି ପଶିବାର ଆଶଙ୍କା ନ ଥାଏ । ଘଣ୍ଟାଧରି କ୍ରମାଗତ ୧୫ ମିନିଟ ଏହିପରି ମୁଣ୍ଡ ଧୋଇ ଦେଲେ ୨° ବା ୩° ତାପ କମିଯାଏ । ମୁଣ୍ଡକୁ ଭଲ କରି ଶୁଖିଲା କନା ବା ଗାମୁଛାରେ ପୋଛି ରୋଗୀକୁ ଆରାମରେ ଶୁଆଇ ଦେବ ଓ ଖୁବ୍ ଥଣ୍ଡା ସରବତ ପିଆଇ ଦେବ । ବରଫ ଥିଲେ ମୁଣ୍ଡରେ ଦେବ । ଲହି ଉପରେ ପାଣିବେଲା ରଖି ପାଣି ଫେଣ୍ଟିଲେ ରୋଗୀକୁ ଆରାମ ଲାଗେ ଓ ତାପ କମିଯାଏ । ଏଥିରେ ମଧ୍ୟ ତାପର ଉପଶମ ନ ହେଲେ ବା ତାପ ବଢୁଥିଲେ ବଡ଼ କୁଣ୍ଡରେ ଖୁବ୍ ଥଣ୍ଡା ପାଣି ପୂରାଇ ରୋଗୀକୁ ସେଥିରେ ବସାଇଦେବ ବା ଶୁଆଇ ଦେବ, ମୁଣ୍ଡକୁ ଉପରେ ରଖି ମୁଣ୍ଡରେ ପାଣି ଜୁଡ଼ୁବୁଡ଼ୁ ଗାମୁଛା ଘଷୁଥିବ । ଦେହତମାମ ମଧ୍ୟ ଗାମୁଛା ଘଷିବ । ଅବସ୍ଥା ଦେଖି ୫ ମିନିଟରୁ ୧୦ ମିନିଟ ପର୍ଯ୍ୟନ୍ତ ରୋଗୀକୁ ଥଣ୍ଡାପାଣି କୁଣ୍ଡରେ ରଖାଯାଇ ପାରେ । ବରଫ ମିଳୁଥିଲେ ବରଫ ଖଣ୍ଡ କେତେଟା କୁଣ୍ଡରେ ଭସାଇ ଦେଲେ ପାଣି ଅଧିକ ଥଣ୍ଡା ହୋଇଯାଏ । ଅସାଧ୍ୟ ଅବସ୍ଥାରେ ବରଫ ଖଣ୍ଡ ପିଠି ମଝିଶିରା ହାଡ଼ ଉପରେ ଘଷିଲେ ଭଲ ଫଳ ଦିଏ । ଜଳ ଚିକିତ୍ସା ପରେ ରୋଗୀକୁ କାଗିଜି ଲେମ୍ବୁର ରସର ସରବତ ପିଆଇବ । ଲୁଣ ପାଣିରେ ଲେମ୍ବୁରସ ମିଶାଇଦେଲେ ମଧ୍ୟ ଭଲ । ଖୁବ୍ ବେଶୀ ତାତଥିଲା ବେଳେ ଅଦୃଶ୍ୟ ଭାବରେ ଦେହରୁ ବହୁତ ଝାଳ ବାହାରି ଯାଏ । ଝାଳ ସଙ୍ଗରେ ବହୁତ ପାଣି ଓ ଲୁଣ ଦେହରୁ ଚାଲିଯାଏ । ରକ୍ତରେ ପାଣିର ଅପେକ୍ଷାକୃତ ଅଭାବ ଯୋଗୁଁ ପରିସ୍ରାର ପରିମାଣ

ଖୁବ୍ କମ ହୁଏ ଓ ପରିସ୍ରା ଗାଢ଼ ଓ ନାଲିଆ ହୁଏ । ଏପରି ଅବସ୍ଥାରେ ଦେହକୁ ଯଥେଷ୍ଟ ପରିମାଣରେ ପାଣି ଓ ଲୁଣ ଯୋଗାଇବା ନିତାନ୍ତ ଦରକାର ପଡ଼େ । ଥରକୁ ଥର ପାଣିରେ ସାମାନ୍ୟ ଲୁଣ ଦେଇ ଲେମ୍ବୁରସ ମିଶାଇ ରୋଗୀକୁ ପିଆଇବ । ଏଥିରେ ରୋଗୀର ପାଣି ଓ ଲୁଣର ଅଭାବ ମେଣ୍ଟିବ ଓ ହୃଦଯନ୍ତ୍ର ଓ ରକ୍ତ ପ୍ରବାହ ସ୍ୱାଭାବିକ ଭାବରେ ଚାଲୁହେବ । ଜଳ ଚିକିତ୍ସା ପରେ ରୋଗୀ ଦୁର୍ବଳତା ବୋଧ କଲେ ବ୍ରାଣ୍ଡି ଗୁମୁଚ୍ଚିଏ ପିଆଇ ଦେବ । ଏହାପରି ଘରୋଇ ଜଳ ଚିକିତ୍ସାରେ ତାତ ନ କମିଲେ ଡାକ୍ତରଙ୍କ ସାହାଯ୍ୟ ନେବ ।

ମାଲେରିଆ ରୋଗ ଆକ୍ରମଣର ତୃତୀୟ ଅବସ୍ଥାରେ ଧମାଧମ ଝାଳ ବୁହେ । ଲୁଗାପଟା ବିଛଣାପତ୍ର ଝାଳରେ ଜୁଡ଼ୁବୁଡ଼ୁ ହୋଇ ଯାଏ । ରୋଗୀକୁ ଆରାମ ଲାଗେ । ଝାଳ ବୋହିଗଲେ ସେହି ପାଳିର ଆକ୍ରମଣ ଶେଷ ହୋଇଗଲା ବୋଲି ଧରାହୁଏ । ଅତି ବେଶୀ ଝାଳ ବୋହିଗଲେ ରୋଗୀକୁ ବଡ଼ ଦୁର୍ବଳତା ଲାଗେ । କେବେ କେବେ ସନ୍ନିପାତ ଅବସ୍ଥା ଆଡ଼କୁ ଚାଲିଆସେ । ଏହି ଅବସ୍ଥାରେ ରୋଗୀକୁ ଉତ୍ତେଜକ ଜିନିଷ ଖୁଆଇବାକୁ ହେବ । ଗରମ ପାଣିରେ ଟିକିଏ ଲୁଣ ଓ ଗୋଟାଏ କାଗିଜି ଲେମ୍ବୁର ରସ ଦେଇ ପିଆଇଲେ ରୋଗୀର ପାଣି ଓ ଲୁଣର ଅଭାବ ମେଣ୍ଟିଯାଇ ଟିକିଏ ଉତ୍ତେଜନା ଆସେ । ବିଶେଷ ଦୁର୍ବଳତା ଥିଲେ, ସନ୍ନିପାତର ଆଶଙ୍କା ଥିଲେ ବ୍ରାଣ୍ଡି ବା ମକରଧ୍ୱଜ ବା ଉଭୟ ଦେଲେ ଭଲ । ଏତିକିରେ ଆଉ ବିପଦର ଆଶଙ୍କା ରହେ ନାହିଁ । ଅହୁରି ଅବସ୍ଥା ଗୁରୁତର ହେଲେ ଡାକ୍ତରଙ୍କର ବିଶେଷ ଚିକିତ୍ସାର ଆଶ୍ରୟ ନେବାକୁ ହେବ ।

କମ୍ପ, ତାତ, ଝାଳ ଏହି ତିନି ଅବସ୍ଥା ଖାଣ୍ଟି ମାଲେରିଆ ଆକ୍ରମଣର ସାଧାରଣ ଲକ୍ଷଣ । କିନ୍ତୁ ସବୁବେଳେ ଏହିସବୁ ଲକ୍ଷଣ ଏକାଠି ମିଳେ ନାହିଁ, ବହୁ ପ୍ରକାର ଲକ୍ଷଣ ବ୍ୟତିକ୍ରମ ଘଟିବାର

ଦେଖାଯାଏ । ରୋଗ ମାଲେରିଆ କି ନୁହେଁ ଏହା ନିର୍ଣ୍ଣୟ କରିବା ମଧ୍ୟ ସବୁବେଳେ ସହଜ ହୁଏ ନାହିଁ । ବିଜ୍ଞ ଚିକିତ୍ସକ କେବଳ ରୋଗ ନିର୍ଣ୍ଣୟ କରି ପାରନ୍ତି ।

ଏକପ୍ରକାର ମାରାତ୍ମକ ମାଲେରିଆ ଅଛି, ଏଥିରେ ସବୁବେଳେ ବିପଦର ଅଶଙ୍କା । ଏହିରୋଗ ମସ୍ତିଷ୍କ ଓ ଅନ୍ତ ନାଡ଼ିକୁ କେବେ କେବେ ଆକ୍ରମଣ କରି ଅବସ୍ଥା ଶୋଚନୀୟ କରି ପକାଏ । ରୋଗୀ ଚିକିତ୍ସାଧୀନ ହେବା ପୂର୍ବରୁ ବା ରୋଗ ନିର୍ଣ୍ଣୟ ପୂର୍ବରୁ କେବେ କେବେ ରୋଗୀ ମରିଯାଏ । କେତେକ ଭୀଷଣ ରୋଗର ଲକ୍ଷଣ ସଙ୍ଗେ ଏହି ମାରାତ୍ମକ ମାଲେରିଆର ଲକ୍ଷଣ ପ୍ରାୟ ସମାନ ଥିବାରୁ ନିର୍ଦ୍ଦିଷ୍ଟ ରୋଗ ନିର୍ଣ୍ଣୟରେ ଡାକ୍ତରମାନଙ୍କର ମଧ୍ୟ ଭୁଲ ହୋଇଯାଏ । ଅଣୁବୀକ୍ଷଣ ଯନ୍ତ୍ର(**Microscope**)ସାହାଯ୍ୟ ବିନା କେତେକ ସ୍ଥାନରେ ରୋଗ ନିର୍ଣ୍ଣୟ କରାଯାଇ ପାରେ ନାହିଁ । ମାରାତ୍ମକ ମାଲେରିଆ ଆକ୍ରମଣରେ ରୋଗୀର ହୋସ ଭଲ ରହେ ନାହିଁ । ରୋଗୀ ବାଉଳ ଗୁଉଳ ହୁଏ, ଦୁର୍ବଳତା ବେଶୀ ଥାଏ । ତାତି ବେଶୀ ନ ହେଲେ ମଧ୍ୟ ରୋଗୀର ଅବସ୍ଥା ଭୟଙ୍କର ଦେଖାଯାଏ । ହୋସ୍ ଖରାପ ହେବା ଓ ବାଉଳ ଗୁଉଳ ହେବା ମସ୍ତିଷ୍କ ଉପରେ ଆକ୍ରମଣର ଚିହ୍ନ । ଏପରି ଅବସ୍ଥାରେ ମୁଣ୍ଡକୁ ଖୁବ୍ ଥଣ୍ଡା ପାଣିରେ ଧୋଇଦେବ । ବରଫ ମିଳିଲେ ବରଫଥଳି ଲଦିବ, ନଚେତ୍ ୧୫ ମିନିଟ୍ ପର୍ଯ୍ୟନ୍ତ ମୁଣ୍ଡରେ ଖୁବ୍ ଥଣ୍ଡାପାଣି ଢାଳିବ । ଏଥିରେ ଦୁରବସ୍ଥାର ଉପଶମ ହୋଇଥାଏ ।

ରୋଗୀର ପ୍ରକୃତ ନିର୍ଦ୍ଦିଷ୍ଟ ଚିକିତ୍ସାପାଇଁ କ୍ୱିନାଇନ୍ ଜାତୀୟ ଔଷଧ ଲୋଡ଼ା; କିନ୍ତୁ କ୍ୱିନାଇନ୍ ଦେବା ପୂର୍ବରୁ ଦୁଇ ତିନିପାଳି ଅପେକ୍ଷା କରିବା ଉଚିତ । ଏଥିମଧ୍ୟରେ ରୋଗୀକୁ ପୂର୍ଣ୍ଣ ବିଶ୍ରାମ ଓ ଆରାମରେ ରଖି ଲଘୁପାକ ଅଥଚ ପୁଷ୍ଟିକର ଖାଦ୍ୟଦେଇ ରୋଗୀର ସାଧାରଣ ରୋଗ ବିରୋଧୀ ଶକ୍ତିକୁ ବଢ଼ାଇବ । ଏହି ଅବସ୍ଥାରେ ଯଥେଷ୍ଟ ପରି-

ମାଣରେ ପାଣି, ସରବତ, ପଇଡ଼ପାଣି ଓ ଲୁଣପାଣି ସଙ୍ଗେ କାଗିଜି-ଲେମ୍ବୁ ରସ ମିଶାଇ ରୋଗୀକୁ ପିଆଉଥିବ । ଏଥିରେ ମାଲେରିଆ-ଜୀବାଣୁଜନିତ ବିଷ ଦେହରୁ ଝାଳ ଓ ପରିସ୍ରାରେ ବାହାରିଯିବ । ଏତକ କରିସାରି ସିଙ୍କୋନା ବକଲାଗୁଣ୍ଡ, ଟୋଟାକ୍ୱିନା ବା କ୍ୱିନାଇନ୍ ଆରମ୍ଭ କରିବ । ଦିନକୁ ୧୫ ଗ୍ରେନ୍‌ରୁ (ସାଧାରଣତଃ ମିଳୁଥିବା ତିନିଗୋଟି ବଟିକା) ବେଶୀ ଦରକାର ନାହିଁ । ଏଥିରୁ ବେଶୀ ଦେଲେ ରୋଗୀକୁ ବଡ଼ କଷ୍ଟ ହୁଏ । ଲେମ୍ବୁ ପାଣିରେ କ୍ୱିନାଇନ୍ ଗୁଣ୍ଡ ପକାଇଲେ ସହଜରେ ପାଣିରେ ମିଳେଇଯାଏ । କ୍ୱିନାଇନ୍ ଖାଇବାର ଏହା ଉତ୍କୃଷ୍ଟ ଉପାୟ । ଅବଶ୍ୟ ଏହା ଭାରି ପିତା ଲାଗେ । ଗୁଣ୍ଡ ଖୁଆଇ ଲେମ୍ବୁରସ ଖୁଆଇଲେ ମଧ୍ୟ ଚଳେ । ବଟିକା ବିଶ୍ୱାସଯୋଗ୍ୟ ନୁହେଁ, କାରଣ ଏହା ରକ୍ତକୁ ନ ଯାଇ ଝାଡ଼ାରେ ବାହାରି ଯିବାର ସମ୍ଭାବନା ଅଛି । ଏହିପରି ପ୍ରାୟ ଏକସପ୍ତାହ ପର୍ଯ୍ୟନ୍ତ ଖୁଆଇବ । ଜ୍ୱର ଛାଡ଼ିଗଲେ ମଧ୍ୟ ଏକସପ୍ତାହ ପର୍ଯ୍ୟନ୍ତ କ୍ୱିନାଇନ୍ ଖୁଆଇବ । ଏହାପରେ ଏକଦମ ବନ୍ଦ କରିଦେବ । ଖାଲିପେଟରେ ନ ଖାଇ ସାମାନ୍ୟ କିଛି ଖାଇ କ୍ୱିନାଇନ୍ ଖାଇଲେ ଭଲ ।

ବିଧିମତେ ଚିକିତ୍ସା ନ କଲେ ବା ବେହିସାବମତରେ କ୍ୱିନାଇନ୍ ଖାଇଲେ ରୋଗ ସହଜରେ ଭଲ ହୁଏ ନାହିଁ । କେବେ ଛାଡ଼ିଯାଏ, ଆଉ କେବେ ପୁଣି ଆରମ୍ଭ ହୁଏ । ଖାଣ୍ଟି ମ୍ୟାଲେରିଆରେ କମ୍ପ, ତାତି, ଝାଳ—ଏହି ତିନି ନିର୍ଦ୍ଦିଷ୍ଟ ଅବସ୍ଥା ଆଉ ଦେଖାଯାଏ ନାହିଁ । ଟିକିଏ ଋଣିଋଣି ଜ୍ୱର ହୁଏ ବା ସାମାନ୍ୟ ଟିକିଏ ଶୀତ ହୋଇ ଜ୍ୱର ଉଠିଯାଏ । ନିର୍ଦ୍ଦିଷ୍ଟ ପାଳି ଆଉ ରହେ ନାହିଁ, ପିଳେହି ବଢିଯାଏ । କେବେ ଅବା ଯକୃତ୍ ବଢ଼େ । ଆଖି ହଳଦିଆ ହୋଇ ପୀତକାମଳ ହୁଏ । ଦେହ ବହୁପରିମାଣରେ ରକ୍ତଶୂନ୍ୟ ହୋଇ ଶେତା ଦେଖାଯାଏ । ଦେହରେ ବଳ ରହେ ନାହିଁ, ମନରେ ଫୁର୍ତ୍ତି ନ ଥାଏ । କୌଣସି କାମରେ ମନ ଲାଗେ ନାହିଁ । ଏହି

ହେଉଛି ରୋଗର ବଡ଼ ଖରାପ ଅବସ୍ଥା । ଏହି ଅବସ୍ଥାର ଘରୋଇ ଚିକିତ୍ସା ସନ୍ତୋଷଜନକ ହୁଏ ନାହିଁ । ଆରୋଗ୍ୟପାଇଁ ଡାକ୍ତରଙ୍କର ଚିକିତ୍ସାଧୀନ ହେବା ନିତାନ୍ତ ଆବଶ୍ୟକ । ଡାକ୍ତରଙ୍କର ଉପଦେଶ ଅନୁସାରେ ଚିକିତ୍ସା ଆରମ୍ଭ କଲେ ଆରୋଗ୍ୟଲାଭର ଆଶା ନିଶ୍ଚୟ ଅଛି । କିନ୍ତୁ ବହୁତ ସମୟ ଲାଗେ । ଏଥିରେ ରୋଗୀର ଓ ଡାକ୍ତର ଉଭୟଙ୍କର ବିଶେଷ ଧୈର୍ଯ୍ୟ ଲୋଡ଼ାହୁଏ । ଏହିପରି ଅବସ୍ଥାରେ କେତେକ ମାମୁଲି ଘରୋଇ ଚିକିତ୍ସାର ସଙ୍କେତ ଦିଆହେଉଛି ।

୧ । ଯଥେଷ୍ଟ ପାଣି, ସରବତ, ପଇଡ଼ପାଣି, କାଗିଜିରସ ମିଶା ଲୁଣ ପାଣି, ଫୁଟିଆଣି ପାଣି, ଗୁଈଁପଖାଳର ତୋରାଣି ଓ ଘୋଳଦହି ଇତ୍ୟାଦି ପିଇବାର ବନ୍ଦୋବସ୍ତ କରିବ ।

(୨) ପ୍ରତିଦିନ ରୋଗୀକୁ ଓଦା ଗାମୁଛା ବା ତଉଲିଆରେ ଭଲ କରି ପୋଛିଦେବ ।

(୩) ରୋଗୀକୁ ଯେତେଦୂର ସମ୍ଭବ ବିଶ୍ରାମ ଓ ଆରାମରେ ରଖିବ ।

(୪) ଜୀର୍ଣ୍ଣଶକ୍ତି ଅନୁସାରେ ଲଘୁପାକ ଅଥଚ ପୁଷ୍ଟିକର ଖାଦ୍ୟର ବ୍ୟବସ୍ଥା କରିବ । ଆର୍ଥିକ ଶକ୍ତି ଅନୁସାରେ ଦୁଧ,ଅଣ୍ଡା, ସୁରୁଆ ଅଙ୍ଗୁର, କମଳା ବେଦନା ଓ ଡାଳିମ୍ବ ଇତ୍ୟାଦି ଖୁଆଇବ । ପ୍ରତିଦିନ ଘୁମୁସେଇ ଜର ନ ହେଉଥିଲେ ଅଧାସିଝା କୁକୁଡ଼ା ଅଣ୍ଡା, ଦୁଧ, ଛୋଟ ଛୋଟ ମାଛ, କଲିଜା, ଡାଲିର ପାଣି ଓ ସୁରୁଆ ଖାଇବାକୁ ଦେବ । ଏହା ସଙ୍ଗେ ରୁଚି ଓ ସ୍ୱାସ୍ଥ୍ୟର ଅବସ୍ଥା ଦେଖି ଭାତ ଦୋରକା କରି ଦିଆଯାଇପାରେ । ଘୁମୁସେଇ ଘୁମୁସେଇ ଜର ହେଉଥିଲେ ଭାତ, ମାଛ, କଲିଜା ନ ଦେଲେ ଭଲ । ଏପରି ଅବସ୍ଥାରେ ବାର୍ଲି, ସାଗୁ, ପାଳୁଅ ଓ ସୁଜି ଖିରି ବା ଧନିଆ ଚାଉଳ ଖିରସା ଦେଲେ ଭଲ ।

(୫) ଆର୍ଥିକ ଶକ୍ତି ଭଲଥିଲେ ମାଲେରିଆ ହେଉଥିବା ଅସ୍ୱାସ୍ଥ୍ୟକର ସ୍ଥାନ ଛାଡ଼ି ପାହାଡ଼ିଆ, ଶୁଖିଲା ସ୍ୱାସ୍ଥ୍ୟକର ଜାଗାକୁ କିଛିଦିନ ଗଲେ ଭଲ । ବାୟୁ ପରିବର୍ତ୍ତନରେ କେବଳ ଦେହ ଭଲ ହୋଇ ଯାଇପାରେ ।

ଏତିକି ମାତ୍ର କରିପାରିଲେ ପୁରୁଣା ମାଲେରିଆ ରୋଗ ଅପେ ଅପେ ଭଲ ହୋଇ ଯାଇପାରେ । କୌଣସି ଔଷଧ ବହୁ କ୍ଷେତ୍ରରେ ଲୋଡ଼ା ହୁଏ ନାହିଁ; କିନ୍ତୁ ସାଧାରଣ ଦୁର୍ବଳତା ଓ ରୋଗପ୍ରତିରୋଧୀ ଶକ୍ତିର ଅଭାବ ଯୋଗୁ ଓ ଅନ୍ୟାନ୍ୟ ଆନୁସଙ୍ଗିକ ରୋଗର ସମାବେଶ ଯୋଗୁଁ ରୋଗୀର ଚିକିତ୍ସା ଓ ସ୍ୱାସ୍ଥ୍ୟଲାଭ କଷ୍ଟକର ହୁଏ । ଏହିପରି ପରିସ୍ଥିତିରେ ରୋଗୀ ଡାକ୍ତରଙ୍କର ସମ୍ପୂର୍ଣ୍ଣ ଚିକିତ୍ସାଧୀନ ହୋଇ ଡାକ୍ତରଙ୍କ ସଙ୍ଗେ ସହଯୋଗ କରିବା ଦରକାର । ରୋଗୀ ଓ ଚିକିତ୍ସକଙ୍କର ପୂର୍ଣ୍ଣ ସହଯୋଗ ସହାନୁଭୂତି ବିନା ଆରୋଗ୍ୟ ଅସମ୍ଭବ । ଚିକିତ୍ସାର ବିଶଦ ବିବରଣ ଘରୋଇ ଚିକିତ୍ସାର ଆଲୋଚ୍ୟ ବିଷୟ ହୋଇ ନ ପାରେ । ଚିକିତ୍ସାର ଭାର ପୂର୍ଣ୍ଣମାତ୍ରାରେ ଚିକିତ୍ସକଙ୍କ ହାତରେ ଛାଡି ଦେବାକୁ ହେବ ।

## ମାଲେରିଆ ରୋଗର କେତେକ ଆନୁସଙ୍ଗିକ ଅବସ୍ଥା

**ବାନ୍ତି**—ମାଲେରିଆ ଆକ୍ରମଣବେଳେ ଖୁବ୍ ବାନ୍ତି ହେବା ମଧ୍ୟ ଦେଖାଯାଏ । ବାନ୍ତି ସଙ୍ଗେ ପିତ୍ତ ମଧ୍ୟ ପଡ଼େ । ଆକ୍ରମଣର ଅଳ୍ପ ସମୟ ପୂର୍ବରୁ ପେଟ ପୂରାଇ ଖାଇଥିଲେ ବାନ୍ତି ହେବାର ଆଶଙ୍କା ବେଶୀ ଥାଏ । ଏପରି ଅବସ୍ଥାରେ ପେଟରେ କିଛି ରହେ ନାହିଁ । କୌଣସି ପ୍ରକାର ଔଷଧ ଦେବା ମାତ୍ରେ ବାନ୍ତି ହୋଇଥାଏ ।

ଏପରି ଅବସ୍ଥାରେ ଔଷଧ ପତ୍ର ବନ୍ଦ କରିଦେବ । ସାଧାରଣତଃ ଜ୍ୱରର ପ୍ରକୋପ କମିଗଲେ ବାନ୍ତି କମିଯାଏ । ଖଣ୍ଡ ଖଣ୍ଡ ବରଫ ରୋଗୀକୁ ଚୁଚୁମିବାକୁ ଦେଲେ ମଧ୍ୟ ବାନ୍ତିର ଉପଶମ ହୋଇଯାଏ ।

ବରଫ ନ ମିଳିଲେ ଖୁବ୍ ଥଣ୍ଡା ପାଣିରେ କାଗିଜିଲେମ୍ବୁ ଚୁପୁଡ଼ି ଅଳ୍ପ ଅଳ୍ପ ପିଇବାକୁ ଦେଲେ ପାକସ୍ଥଳୀର ବ୍ୟଗ୍ରତା କମିଯାଏ । ଲେମ୍ବୁ ଖଣ୍ଡେ ଶୁଙ୍ଘିଲେ ବା ଚୁଚିଲେ ମଧ୍ୟ ଭଲ । କେତେକ ସ୍ଥଳରେ ତୋରାଣି, କାଞ୍ଜିପାଣି, ଘୋଳଦହି ଓ ଲେମ୍ବୁରସ ମିଶାଇ ପିଇବାକୁ ଦେଲେ ବାନ୍ତି ମାଡ଼େନାହିଁ ।

## ପ୍ରଳାପ ଓ ଉଦ୍‌ବେଗ

ତାତର ପରିମାଣ ବେଶୀ ହେଲେ ଓ ମାରାତ୍ମକ ମାଲେରିଆ ଆକ୍ରମଣରେ ତାତ ବେଶୀ ନ ହୋଇ ମଧ୍ୟ ରୋଗୀ ବଡ଼ ଉଚ୍ଛାଟ ହୁଏ । ରୋଗୀକୁ ଆୟତ୍ତ କରି ରଖିବା ବଡ଼ କଷ୍ଟକର ହୋଇପଡ଼େ । ଜଳ ଚିକିତ୍ସା ହେଉଛି ଏହି ଭୟାନକ ଅବସ୍ଥାରେ ଏକମାତ୍ର ପ୍ରକୃଷ୍ଟ ଅମୋଘ ଉପାୟ । ସାଧାରଣତଃ ମୁଣ୍ଡକୁ ୧୫ ମିନିଟ୍ ପର୍ଯ୍ୟନ୍ତ ଥଣ୍ଡା ପାଣିରେ ଧୋଇଲେ ପ୍ରଳାପ ଓ ଉଦ୍‌ବେଗ କମିଯାଏ । ବରଫ ଥଳି ମୁଣ୍ଡରେ ଲଦି ରଖିଲେ ଅବଶ୍ୟ ଭଲ ।

## ରକ୍ତପରିସ୍ରା

କୁଇନାଇନ୍‌ର ଅପବ୍ୟବହାରରେ ଓ ବିଶେଷତଃ ମାରାତ୍ମକ ମାଲେରିଆରେ କେବେ କେବେ ରକ୍ତ ପରିସ୍ରା ହେବାର ଦେଖାଯାଏ । ମୂତ୍ର ଥଳୀରେ ଏହି ରକ୍ତ ପରିସ୍ରା ବେଶୀ ସମୟ ପଡ଼ି ରହିଲେ ବର୍ଣ୍ଣ କଳା ହୋଇଯାଏ । ସେଥିପାଇଁ ଏହି ଅବସ୍ଥାକୁ କଳା ପରିସ୍ରା ଜ୍ୱର ବା **(Blackwater fever)** କୁହାଯାଏ । ଏହି ସାଙ୍ଘାତିକ ରୋଗ ସାଧାରଣତଃ ଗଞ୍ଜାମ, କୋରାପୁଟ ଓ ଅନୁଗୁଳର ମାଳ ଅଞ୍ଚଳରେ ଦେଖାଯାଏ । କେବେ କେବେ ମଧ୍ୟ କଟକ, ପୁରୀ, କେନ୍ଦ୍ରାପଡ଼ା, ପାରଳାଖେମୁଣ୍ଡି ପରି ସମତଳ ଅଞ୍ଚଳରେ ମାଲେରିଆ ସଙ୍ଗେ ରକ୍ତ ପରିସ୍ରା ଦେଖାଯାଇଥାଏ । ଏହି ଆସନ୍ନ ବିପଦରେ ବିଜ୍ଞ ଚିକିତ୍ସକଙ୍କ

ଡାକ୍ତରର ଚିକିତ୍ସାଧୀନ ହେବା ନିତାନ୍ତ ଦରକାର । ସାମାନ୍ୟ ଅବହେଳାରେ ରୋଗୀ ଅଳ୍ପକେ ମରିଯାଏ । ଚିକିତ୍ସା ସମୟରେ ଓ ଡାକ୍ତରଙ୍କ ଚିକିତ୍ସାଧୀନ ହେବାପୂର୍ବରୁ କେତେକ ବିଶେଷ ନିୟମ ମାନି ଚଳିବାକୁ ହେବ ।

୧ । ରୋଗୀକୁ କେବେହେଁ ହଲଚଲ ନ କରି ବିଛଣାରେ ଆରାମରେ ଶୁଆଇ ରଖିବ ।

୨ । ବହୁତ ପରିମାଣରେ ପାଣି, ପଇଡ଼ପାଣି, ସୋଡ଼ା, ସରବତ ପିଆଇବ । ପରିସ୍ରା ହେଉଥିବା ପର୍ଯ୍ୟନ୍ତ ବିପଦର ଆଶଙ୍କା ନାହିଁ ।

୩ । ଯଥେଷ୍ଟ ପରିମାଣରେ ଅଙ୍ଗୁର, ଚିନି, ଅଙ୍ଗୁର ରସ, କମଳା ରସ ଓ ବେଦାନା, ଡାଳିମ୍ବ ରସ ପିଇବାକୁ ଦେବ ।

୪ । କୁଇନାଇନ୍ ଓ ସେ ଜାତୀୟ କୌଣସି ଔଷଧ ଖାଇବାକୁ ଆଦୌ ଦେବ ନାହିଁ ।

ଏହି ରୋଗର ସର୍ବପ୍ରଧାନ ମହୌଷଧ ହେଉଛି, ଅନୁଗୁଳ ମାଳ ଜଙ୍ଗଲରେ ମିଳୁଥିବା "ଚଢ଼େଇଗୁଡ଼ି" ଗଛ ବକଳାର ରସ ଓ ଗଞ୍ଜାମ କୋରାପୁଟ ମାଳରେ ମିଳୁଥିବା ସୁନାରିଗଛ ବକଳାର ରସ । ଏହି ଉଭୟ ପରିସ୍ରାବର୍ଦ୍ଧକ । ପରିସ୍ରା ବେଶୀ ହୋଇ ଦେହରୁ ବିଷଗୁଡ଼ିକ ଗୁଚିଗଲେ ରୋଗୀ ଭଲ ହୋଇଯାଏ ।

## ମାଲେରିଆ ନିବାରଣ ପରିକଳ୍ପନା

କୌଣସି ସମସ୍ୟାର ସମାଧାନ କରିବାର ଯୋଜନା ତିଆରି କରିବା ପୂର୍ବରୁ ଅନ୍ୟତ୍ର ଏ ବିଷୟରେ କିପରି ପରିକଳ୍ପନା କରା ହୋଇ ଅଛି ଜାଣିବା ଦରକାର । ସାମ୍ୟବାଦୀ ରୁଷିଆର ୫ ବର୍ଷିଆ ପରିକଳ୍ପନା **(Soviet five years plans)** କଥା ଶୁଣାଅଛୁ ।

ନିଷ୍ଟର୍, ନିପର୍ ଓ ଡନ୍ ନଦୀ ଗୁଡ଼ିକର ଜଳ ସମାଗମରେ ଦକ୍ଷିଣ ରୁଷିଆ ପ୍ରକାଣ୍ଡ ଜଙ୍ଗଲ ପ୍ରାନ୍ତରରେ ପରିଣତ ହୋଇଥିଲା । ମଶାଙ୍କର ପ୍ରାଦୁର୍ଭାବ ଯୋଗୁଁ ଅଞ୍ଚଳଟି ମାଲେରିଆ କବଳିତ ଥିଲା । ଏହିସବୁ ପାଞ୍ଚ ବର୍ଷିଆ ପରିକଳ୍ପନାରେ ମାଲେରିଆ ନିବାରଣ ଅନ୍ୟତମ ଅଙ୍ଗ-ଥିଲା । ଡାକ୍ତର ଓ ଇଞ୍ଜିନିୟରଙ୍କ ସହଯୋଗରେ ବଡ଼ ବଡ଼ ନାଳମାନ ଖୋଲା ହୋଇ ଅଦରକାରୀ ଜମା ହୋଇଥିବା ପାଣିକୁ ଖଲାସ କରା-ଗଲା । ଯନ୍ତ୍ର ସାହାଯ୍ୟରେ ମଶା ମାରିବା ଔଷଧ ବ୍ୟବହାର କରାଗଲା । ଫଳରେ ଦକ୍ଷିଣ ରୁଷିଆ ମାଲେରିଆ ରୋଗରୁ ରକ୍ଷା ପାଇଲା । ଡାନ୍ୟୁବ ନଦୀ ମୁହାଣରେ ଥିବା ତ୍ରିକୋଣ ଭୂଖଣ୍ଡରେ ମଧ୍ୟ ଅବସ୍ଥା ତଦ୍ରୂପ ଥିଲା । ରୁମାନିଆ ସରକାରଙ୍କ ତତ୍ପରତା ଯୋଗୁଁ ସେ ଅଞ୍ଚଳ ବର୍ତ୍ତମାନ ସ୍ୱାସ୍ଥ୍ୟକର ହୋଇଛି । ବିଗତ ମହାଯୁଦ୍ଧ ପରେ ଫାସିଷ୍ଟବାଦୀ ଇଟାଲିର ପୁନର୍ଗଠନ ବେଳେ ବହୁ ଯୁଗ ଯୁଗାନ୍ତରରୁ ପଡ଼ି ରହିଥିବା ପନ୍‌ସ୍ ଜଙ୍ଗଲ ପ୍ରାନ୍ତର (**Pontine Marshes**) ମୁସୋଲିନିଙ୍କର ଦୃଷ୍ଟି ଆକର୍ଷଣ କଲା । ବହୁକାଳରୁ ଏହାଯୋଗେ ଉତ୍ତର ଇଟାଲିରେ ଭୀଷଣ ଭାବରେ ମାଲେରିଆ ହେଉଥିଲା । କେହି କେହି କହନ୍ତି ଇତିହାସ ପ୍ରସିଦ୍ଧ ରୋମ ସାମ୍ରାଜ୍ୟ ଏହି ପନ୍‌ସ୍ ପ୍ରାନ୍ତର ମାଲେରିଆ ଯୋଗୁଁ କ୍ରମେ କ୍ରମେ ନଷ୍ଟ ହୋଇଥିଲା । ଯାହାହେଉ, ନବ ଜାଗରଣର ଉତ୍ସାହରେ ବହୁ ନାଳ ଖୋଲା ହେଲା, ଉଡ଼ାଜାହାଜ ସାହାଯ୍ୟରେ ମଶାନାଶକ ବୋମା ପକାଗଲା, ଶେଷରେ ପନ୍‌ସ୍ ପ୍ରାନ୍ତର ମାଲେରିଆ ମୁକ୍ତ ହୋଇ ଶସ୍ୟଶ୍ୟାମଳ ସମୃଦ୍ଧିଶାଳୀ ଉପନିବେଶରେ ପରିଣତ ହେଲା ।

ଆନ୍ତର୍ଜାତୀୟ ସଂଘ (**League of Nations**) ରାଜନୈତିକ ଓ ଅର୍ଥନୈତିକ କ୍ଷେତ୍ରରେ କୃତକାର୍ଯ୍ୟ ହୋଇପାରିଲା ନାହିଁ ସତ; କିନ୍ତୁ ସ୍ୱାସ୍ଥ୍ୟ ପରିକଳ୍ପନାରେ କୃତକାର୍ଯ୍ୟ ହୋଇ ପାରିଛି । ଆନ୍ତର୍ଜାତୀୟ ସ୍ୱାସ୍ଥ୍ୟ

ଅନୁଷ୍ଠାନର ପୂର୍ବଦେଶ ବିଭାଗର ( **Eastern section of the International Health Organisation** ) ଆନୁକୂଲ୍ୟରେ ବହୁ ଅନୁଶୀଳନ ଓ ଗବେଷଣା ସମ୍ଭବ ହୋଇପାରିଛି । ଏହି ସଂଘର ମ୍ୟାଲେରିଆ ଅନୁଷ୍ଠାନ ( **Malaria Commission of the League of Nations** ) ତରଫରୁ କେତେ କେତେ ମାଲେରିଆ ନିବାରଣର ଉପାୟ ଓ ଔଷଧ ଆବିଷ୍କୃତ ହୋଇଅଛି । ଭାରତ କେନ୍ଦ୍ର ସରକାରଙ୍କ ସ୍ୱାସ୍ଥ୍ୟବିଭାଗରେ ମାଲେରିଆ ନିବାରଣ ଗୋଟିଏ ପ୍ରଧାନ ଅଙ୍ଗ । ଭାରତୀୟ ଗବେଷଣା ପାଣ୍ଠି ସମିତ ( **Indian Research Fund Association**)ର ତତ୍ତ୍ୱାବଧାନରେ ୧୯୨୭ଠାରୁ ଭାରତୀୟ ମାଲେରିଆ ଅନୁଷ୍ଠାନ (**Malaria Institute of India**) ସଂଗଠିତ ହୋଇଅଛି । ମାଲେରିଆ ବିଷୟରେ ବହୁ ଅନୁଶୀଳନ ଓ ଗବେଷଣା ଚାଲିଛି । କେତେକ ମାଲେରିଆ ଜର୍ଜରିତ ସ୍ଥାନ ଜ୍ୱରମୁକ୍ତ ହୋଇ-ଅଛି । ମାଲେରିଆ ବିରୋଧୀ କାର୍ଯ୍ୟକଣା ଚଳାଇବା ଯୋଗୁଁ କେତେ-ଗୁଡ଼ିଏ ଚା ବଗିଚାର ସ୍ୱାସ୍ଥ୍ୟ ସମ୍ପୂର୍ଣ୍ଣ ପରିବର୍ତ୍ତିତ ହୋଇଅଛି । ଫଳରେ ୧୯୨୮ ମସିହା ତୁଳନାରେ ୧୯୩୮ ମସିହାରେ ଦେଖାଗଲା ଉନ୍ନତ-ତର ସ୍ୱାସ୍ଥ୍ୟ ଯୋଗୁ ୧୮୦୦୦ ଚା ବଗିଚା କୁଲି ସେ ବର୍ଷ ୧୦୦,୦୦୦ ଟଙ୍କାର ଅଧିକ ମଜୁରୀ ଅର୍ଜି ଅଛନ୍ତି । *

କେତେକ ବର୍ଷ ପୂର୍ବେ ପଣ୍ଡିତ ଜବାହରଲାଲ ନେହେରୁଙ୍କ ପ୍ରଚେଷ୍ଟାରେ ଜାତୀୟ ପରିକଳ୍ପନା କମିଟି ଗଠିତ ହୋଇଥିଲା । ଏହି କମିଟିର ଗୋଟିଏ ସ୍ୱାସ୍ଥ୍ୟ ପରିକଳ୍ପନା ସବ୍‌କମିଟି ମଧ୍ୟ ଥିଲା ।

---

* Sir Malcol Watson, Director of the Ross Institute of Tropical Hygiene, London speaking at the annual general meeting of the Tea Association at Calcutta on the 29th. March, 1940 pointed out that 'in one group of tea estates

ଅମ ଓଡ଼ିଶା ପ୍ରାଦେଶିକ ସରକାର ଏବେ ସମଗ୍ର ଓଡ଼ିଶା ପାଇଁ ଜଣେ ମାଲେରିଆ ଅଫିସର ନିଯୁକ୍ତ କରିଅଛନ୍ତି । ଓଡ଼ିଶାର ସ୍ୱତନ୍ତ୍ର ଅବସ୍ଥାକୁ ଅନାଇ ସ୍ୱତନ୍ତ୍ର ବ୍ୟବସ୍ଥାର ଯୋଗାଡ଼ ଚାଲିଛି । ପ୍ରାଦେଶିକ ମାଲେରିଆ ଅଫିସର ଓ ତାଙ୍କର ସହକାରୀ ଅଫିସର ଓ କର୍ମୀମାନେ ପୁରୀ ପଞ୍ଚୁକୋଶୀ ଅଞ୍ଚଳ, ଚିଲିକାକୂଳ ଅଞ୍ଚଳ ଓ କେନ୍ଦ୍ରାପଡ଼ା ସହରରେ ଗବେଷଣା ଚଳାଇ ଅଛନ୍ତି । କିନ୍ତୁ ଆମର ଶୋଚନୀୟ ଅବସ୍ଥାର ଅନୁପାତରେ ଏହା ସମୁଦ୍ରରେ ଶଙ୍ଖେ ପାଣି ମାତ୍ର । ସରକାରୀ ବେ-ସରକାରୀ ସହଯୋଗରେ ଉପଯୁକ୍ତ ବାୟୁମଣ୍ଡଳ ସମ୍ଭବ ହେଲେ ଆମେ ମଧ୍ୟ ରୁଷିଆ ପରି ମାଲେରିଆ ସମସ୍ୟାର ସମାଧାନ କରି ଯାଇବା ।

ବେସରକାରୀ ସ୍ଥାନୀୟ ମାଲେରିଆ ନିବାରଣ କମିଟିମାନ ସ୍ଥାପିତ ହୋଇ ବଙ୍ଗଳା ପ୍ରଦେଶରେ ବହୁଦିନରୁ ମାଲେରିଆ ନିବାରଣରେ ପ୍ରଶଂସନୀୟ କାର୍ଯ୍ୟ କରି ଆସୁଅଛି । କର୍ମୀମାନେ ସେହି ଜାତୀୟ ମଙ୍ଗଳ ସାଧନରେ ସରକାରୀ ବେସରକାରୀ କର୍ତ୍ତାମାନଙ୍କର ସହଯୋଗ ଓ ସହାନୁଭୂତି ପାଇଥାନ୍ତି । ଛୁଟି ଦିନରେ ସ୍ଥାନୀୟ ଡାକ୍ତରଙ୍କ ଉପଦେଶ ଅନୁସାରେ ଯୁବକ ସ୍ୱେଚ୍ଛାସେବକମାନେ ମେଳ ବାନ୍ଧି ପୋଖରୀ, ଜୋର, ପ୍ରଭୃତି ଜଳାଶୟରୁ ଦଳ ସଫା କରନ୍ତି, ଗୋଡ଼ିକି ନାଳ ଖୋଳି ଜମିଥିବା ପାଣିକୁ ନିକାଶ କରନ୍ତି । ଅବର୍ଜନା ଜଙ୍ଗଲ ସଫା କରନ୍ତି । କେବେ କେବେ ମାଲେରିଆ ଦିବସ, ସ୍ୱାସ୍ଥ୍ୟ

---

**with 18,000 people, the improved health conditions gave the employees "over 100,000 days' pay more in 1938 than they had ten years ago"**

**(—Annual Report of the Public Health Commissioner with Govt. of India 1940 P. 15,)**

ଦିବସ ପାଳନ କରି ଜନସାଧାରଣଙ୍କ ସହଯୋଗ ଆକର୍ଷଣ କରନ୍ତି । ବହୁତ ସ୍ଥାନରେ ଖୁବ୍ ସୁଫଳ ମିଳୁଛି ।

ଆମ ଓଡ଼ିଶା ପ୍ରଦେଶରେ ମଧ୍ୟ କେନ୍ଦ୍ରାପଡ଼ା, ପିପିଲି, ଭଦ୍ରୋଲ ପ୍ରଭୃତି କେତେକ ସ୍ଥାନରେ ଏହିପରି ଅନୁଷ୍ଠାନ ଏବେ ସ୍ଥାପିତ ହୋଇଅଛି । ୨୭।୧୧।୧୯୪୧ ଦିନ ସ୍ୱାସ୍ଥ୍ୟ ବିଭାଗର ଡିରେକ୍ଟରଙ୍କ ନେତୃତ୍ୱରେ କେନ୍ଦ୍ରାପଡ଼ା ମାଲେରିଆ ସୋସାଇଟି ସେଠାରେ ମାଲେରିଆ ଦିବସ ପାଳନ କରିଥିଲେ; କିନ୍ତୁ ବେସରକାରୀ ଭାବରେ ଯାହା କିଛି ହୋଇଛି ତାହା ସମସ୍ୟାର ଗୁରୁତ୍ୱ ଦୃଷ୍ଟିରେ କିଛି ନୁହେଁ ।

## ପ୍ରାଦେଶିକ ମାଲେରିଆ ନିରୋଧ ପରିକଳ୍ପନା

ଆମର ଶୋଚନୀୟ ଅବସ୍ଥାର ଅଣ୍ଡ ପ୍ରତିକାର ନିମିତ୍ତ ସମଗ୍ର ପ୍ରଦେଶ ପାଇଁ ଗୋଟିଏ ସୁଚିନ୍ତିତ ପରିକଳ୍ପନା ପ୍ରସ୍ତୁତ କରିବା ଉଚିତ । ପ୍ରଦେଶର ଚିନ୍ତାଶୀଳ ଦେଶଭକ୍ତମାନଙ୍କର ଚିନ୍ତାଧାରା ଏ ଦିଗକୁ ଆକୃଷ୍ଟ କରାହେଉଛି । ସରକାରୀ ବେସରକାରୀ ମତଦ୍ୱାରା ଗୃହୀତ ଗୋଟିଏ ସୁନିର୍ଦ୍ଦିଷ୍ଟ ଯୋଜନା ଗଢ଼ାଯାଉ ଓ ଶୀଘ୍ର ସେ ଦିଗରେ କାର୍ଯ୍ୟ ଆରମ୍ଭ କରାଯାଉ । କଳ୍ପିତ ଏହି ପ୍ରାଦେଶିକ ମାଲେରିଆ ନିରୋଧ ପରିକଳ୍ପନାର ଆଭାସ ମାତ୍ର ତଳେ ଦିଆଗଲା—

## ପରିକଳ୍ପନାର ଦୁଇଟି ଅଙ୍ଗ

୧—ସ୍ଥାନୀୟ

୨—ପ୍ରାଦେଶିକ

୧—ସ୍ଥାନୀୟ

**(୧)** ପ୍ରତ୍ୟେକ ମାଲେରିଆ ଜର୍ଜ୍ଜରିତ ସ୍ଥାନରେ ମାଲେରିଆ ନିବାରଣୀ କମିଟି ଗଠନ ।

**(୨)** ସ୍ଥାନୀୟ ସମସ୍ତ ସରକାରୀ ବେସରକାରୀ କର୍ମୀ ଓ ଶିକ୍ଷିତ ଗଣ୍ୟମାନ୍ୟ ଲୋକଙ୍କର ନେତୃତ୍ୱ ଓ ଜନସାଧାରଣଙ୍କ ସମ୍ପୂର୍ଣ୍ଣ ସହଯୋଗ ।

**(୩)** କାର୍ଯ୍ୟପନ୍ଥା

**(କ)** ସ୍ଥାନୀୟ ସ୍ୱତନ୍ତ୍ର ଅବସ୍ଥାର ଅନୁଶୀଳନ ଓ ଗବେଷଣାରେ ସାହାଯ୍ୟ ।

**(ଖ)** ବିଭିନ୍ନପ୍ରକାର ପ୍ରଚାର, ପ୍ରବଳ ଜନମତ ଗଠନ ଓ ସାଧାରଣ ସହଯୋଗ ସଂଗ୍ରହ ।

(ଗ) ରୋଗ ନ ହେବାର ଉପାୟମାନ ଅବଲମ୍ବନ, ମଶା ବଂଶର ବିନାଶ ସାଧନ ( ଉପାୟଗୁଡ଼ିକ ବିଶଦ ଭାବରେ ପୂର୍ବେ ବର୍ଣ୍ଣିତ ହୋଇଅଛି )

(ଘ) ରୋଗୀ ରକ୍ତରୁ ଜୀବାଣୁ ଶୋଧନ ବା କ୍ୱିନାଇନ ଜାତୀୟ ଔଷଧ ଦ୍ୱାରା ରୋଗୀର ଉପଯୁକ୍ତ ଚିକିତ୍ସା ।

(୪) ସ୍ୱାସ୍ଥ୍ୟ ନିୟମର ଅବହେଳାପାଇଁ ଆଇନଗତ ଦଣ୍ଡବିଧାନ ।

୨—ପ୍ରାଦେଶିକ

(୧) ପ୍ରାଦେଶିକ କୁଷ୍ଠରୋଗ, ଯକ୍ଷ୍ମାରୋଗ ନିବାରଣ ଅନୁଷ୍ଠାନ-ପରି ପ୍ରାଦେଶିକ ମ୍ୟାଲେରିଆ ସମିତି ଗଠନ ।

(୨) ସ୍ଥାନୀୟ ସମିତିମାନଙ୍କର କାର୍ଯ୍ୟକ୍ରମ ନିୟନ୍ତ୍ରଣ ।

(୩) ଗବେଷଣା ।

**(୪)** ଭାରତୀୟ କେନ୍ଦ୍ର ଅନୁଷ୍ଠାନ ସଙ୍ଗେ ସହଯୋଗ ।

(୫) ଅବହେଳାପାଇଁ ଯଥୋଚିତ ଶାସ୍ତିମୂଳକ ଆଇନ ସଙ୍କଳନରେ ପ୍ରାଦେଶିକ ସରକାରଙ୍କ ସଙ୍ଗେ ସହଯୋଗ ।

---

Printed by B. K. Kar, B. A. at the Saraswata Press, Cuttack 1943.

## ମ୍ୟାଲେରିଆର ଅବ୍ୟର୍ଥ ପ୍ରତିକାର

# ପାଇରେକସ୍



ସ୍ଥାୟୀ ଫଳ
ପାଇଁ ବହୁକାଳରୁ
ଏହା ଉପରେ
ସମସ୍ତେ ନିର୍ଭର କରି
ଆସୁଛନ୍ତି ।



ପାଇରେକ୍ସ
କୁଇନାଇନ୍ ଦ୍ୱାରା
ମ୍ୟାଲେରିଆ ଜୀବାଣୁ
ସଂହାର କରେ ।



ପାଇରେକ୍ସ
ଧାତବ ଲୌହଦ୍ୱାରା
ରକ୍ତ ପୁଷ୍ଟ କରେ ।






**ବେଙ୍ଗଲ କେମିକାଲ**
କଲିକତା ବମ୍ବେ

# ଆଶ୍ଚର୍ଯ୍ୟ, ଦେବେନ୍ଦ୍ରନାଥଙ୍କ ଆବିଷ୍କୃତ

# Hydrathermine.

TABLOIDS

ଓଡ଼ଅନାମ



ସରକାର ଓ ସରକାରୀ ଡାକ୍ତରମାନଙ୍କ ଦ୍ୱାରା ପ୍ରଶଂସିତ
ଏହା କୁଇନାଇନ ଅମିଳନ ସମୟରେ
ମାଲେରିଆ ଜ୍ୱରର ଏକମାତ୍ର

**ଅବ୍ୟର୍ଥ ମହୌଷଧ ଓ ପ୍ରତିଷେଧକ ।**

କୁଇନାଇନଠାରୁ ଅଧିକ ଶକ୍ତିଶାଳୀ ଓ କମ ବିଷାକ୍ତ
ଗିଲରୁ ବାହାରିଥିବା ନୂଆ ଏଲ୍‌କେଲଏଡ୍‌
ସୁପରୀକ୍ଷିତ ଔଷଧ

## ବିଜୟଶକ୍ତି ଔଷଧାଳୟ, ବାଲେଶ୍ୱର